# ଝରି ଝୁରିଯାଏ...

(ଗୀତି କବିତା ସଂକଳନ)

**ଡ. ଗୋବିନ୍ଦ ଚନ୍ଦ୍ର ଦାଶ**

ଅବସରପ୍ରାପ୍ତ ଅଧ୍ୟକ୍ଷ

ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ

ମହାବିଦ୍ୟାଳୟ, ପୁରୀ



**ଜ୍ଞାନଯୁଗ ପବ୍ଲିକେଶନ**

**ଭୁବନେଶ୍ୱର**

Email : contact@gyanajuga.com　　Website : www.gyanajuga.com

# ଝରି ଝୁରିଯାଏ...

(ଗୀତି କବିତା ସଂକଳନ)


କବି :

ଡ. ଗୋବିନ୍ଦ ଚନ୍ଦ୍ର ଦାଶ



ପ୍ରକାଶନ ଉପଦେଷ୍ଟା :

ବିନୋଦ ବିହାରି ବିଶୋଇ

ମୋ: ୯୯୩୭୬୯୪୭୮୧

ପ୍ରକାଶକ :

ଜ୍ଞାନଯୁଗ ପବ୍ଲିକେଶନ

ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍

ନୟାପଲ୍ଲୀ, ଭୁବନେଶ୍ୱର - ୧୫

ଫୋନ୍ ନଂ : ୦୬୭୪-୨୩୬୨୦୯୧

ଅକ୍ଷରସଜ୍ଜା :

ଦିଗମ୍ବର ମହାଲିକ

ପ୍ଲଟ୍ ନଂ. ୧୩୪, ଲେନ୍-୫, ଜଗନ୍ନାଥ ବିହାର,

ଭୁବନେଶ୍ୱର ୭୫୧୦୦୩,

(ମୋ) ୯୧୨୪୬୬୭୧୭୪

ପ୍ରଚ୍ଛଦ : ସତ୍ୟ ଗୋପାଳ

ପ୍ରଥମ ପ୍ରକାଶ : ୨୦୧୭

ମୁଦ୍ରଣ :

କ୍ରିଏଟିଭ୍ ଅଫ୍‌ସେଟ୍,

ଭୁବନେଶ୍ୱର

ମୂଲ୍ୟ : ଟ.୧୦୦.୦୦

---

Published by Smt. Susama Bisoi on behalf of Gyanjuga Publication, N-6/428, IRC Village, Nayapalli, Bhubaneswar-751015, Odisha, Ph.: (0674) 2362091

ଅତୁଲ୍ ବାବୁ !
ନୂଆକରି ସଂସାରକୁ ଆସି
ଆମ ସମସ୍ତଙ୍କୁ ବାଂଧି ଦେଇଛ
ସଂପର୍କର ଶକ୍ତ ରଜ୍ଜୁରେ ।
ପ୍ରତୀକ୍ଷାର ଅନ୍ତ ଘଟିଛି ।
**"ଝରି ଝୁରିଯାଏ"**କୁ ଟେକିଦେଲି
ତୁମରି ହାତରେ....

**ଜେଜେବାପି**

# ଝରି ଝୁରିଯାଏ ପଢ଼ିଲା ପରେ...

ଗୀତି କବିତା ଓଡ଼ିଆ ଭାଷା ଶରୀରର ଏକ ସୁକୋମଳ ଅଙ୍ଗ । ଏଥିରେ ଥିବା କଳ୍ପନାର ଛିଟା, କାମନାର ସୀମାହୀନ ସାଗରର ଲୁଣୀଜଳରେ ଭରିଦିଏ ଅସୁମାରୀ ସ୍ନିଗ୍ଧ ଶୀତଳତା, ମୃଦୁମଧୁ ମାଦକତା । ଅଚାନକେ ମନକୁ ଆପେ ଆପେ ଟାଣିନିଏ ଗହନ ସ୍ମୃତିର କେଉଁ ନିଚୋପ ଗମ୍ଭିରା କୋଣକୁ । ଯେଉଁଠି ଚିର ଅପେକ୍ଷାମାଣ ନାୟିକା ଆପେ ଆପେ ପାଛୋଟି ନେବାକୁ ହାତ ମେଲାଇ ବାଟ ଚାହିଁ ବସିଥାଏ ଖିଆଲି ପ୍ରେମିକର ଆଗମନକୁ । ହେଉ ସେ ବର୍ଷାଭିଜା ରାତିର ଅଳସ ଲଗ୍ନରେ, ଅବା ଫୁଲ ଫଗୁଣର ମିଳନ ବତୁରା ମନ-ବେଳାରେ, ଅଥବା ଶୀତ ସକାଳର କାଲୁଆ ଶିଶିରରେ ଭିଜା ଘାସ ଗାଲିଚାର ରଂଗସଭାରେ - ଅପେକ୍ଷାର ଶେଷ, ମିଳନର ସାହାନାଇରେ ମୁଖରିତ ହୋଇ ନ ଉଠିଲେ ବି ବିରହ ଭିତରେ ଶୁଭେ ମଧୁମିଳନର ବଂଶୀଧ୍ୱନି, ପ୍ରୀତି-ସ୍ମୃତିର ଅପାଶୋରା-ନହବତର ବାରବାର ଗୁଂଜରଣ ।

ଗୀତି କବିତା ଏକ ବ୍ୟକ୍ତିନିଷ୍ଠ ରଚନା ସତ, ଏଥିରେ ଥିବା ପ୍ରୀତି, ବିରହ, ମିଳନ, ଆଶା, ଆକାଙ୍‌କ୍ଷା, ପ୍ରତାରଣା ଅଥବା ଅସଫଳ ପ୍ରେମ କାହାଣୀମାନ ଗାଇବା ବା ପଢ଼ିବା ଅବସରରେ ମନର କାନ୍‌ଭାସ୍‌ରେ ଆପେ ଆପେ ଆଂକିଦିଏ ଅନେକ ସ୍ମୃତିର ରୋମନ୍ଥନର ଛିଟା । ଯେତେବେଳେ କବିର କଥା, ଶ୍ରୋତାର ମନଭୂଇଁକୁ ଏକ ଭାବ-ମଗ୍ନ କରୁଣତାରେ ଭରିଦିଏ, ସେଇଠି ଚିରସବୁଜ ହୋଇଉଠେ ପ୍ରୀତିର ପର୍ବ । ଜଣକର ପ୍ରୀତିଭିଜା ସଫଳ/ ଅସଫଳର କାହାଣୀକୁ ଆଉଥରେ ଜୀବିତ କରାଇ ଦେବାର କ୍ଷମତା କେବଳ ଗୀତି କବିତାରେ ହିଁ ଥାଏ; ଯାହା ଝରିଲା ପରେ ଝୁରାଇ ଦେଇଚାଲେ ସମଗ୍ର ପ୍ରୀତିମନସ୍କ କବିକୁଳକୁ ।

କହିବାରେ ଆଦୌ ବାହୁଲ୍ୟ ନାହିଁ ଯେ କବି ଡ. ଗୋବିନ୍ଦ ଚନ୍ଦ୍ର ଦାଶଂକ କବିତାଗୁଡ଼ିକ ଅନେକତଃ ଏକ ଏକ 'ରୁବାୟତ' ଭଳି ମନେ ହେଲା । କବି ସାହିତ୍ୟର ବିଭିନ୍ନ ବିଭାଗରେ ସାଧନାରତ ଥିଲେ ମଧ୍ୟ; ମନେହେଲା ଗୀତି-କୋଣାର୍କର ସେ ଜଣେ ସୁଦକ୍ଷ ବିନ୍ଧାଣୀ । କବିତାର ଶିଳାଗୃହରେ ସେ ସହଜରେ ଆଂକି ଦେଇଛନ୍ତି ଜ୍ୟୋସ୍ନାରାତିର ସ୍ନିଗ୍ଧ ବିଭୋରତା, ଦୂରାଗତ ନାଉରୀର ବଂଶୀଧ୍ୱନୀରେ ଅସୁମାରୀ ଉଚ୍ଚାଟନ, ବାରବାର ଶ୍ରୁତିପଥକୁ କାମନାର ନିଆଁରେ ପୁନଃପୁନଃ ଜାଳିଦେବାକୁ ସମର୍ଥ କରିଛି । କବିତାଗୁଡ଼ିକ ଆପେ ଆପେ ମନେ ହେଉଛନ୍ତି ଆଉଟା ସୁନାର ଝଟଝଟ ଆଭୂଷଣ ପରି । ଯାହାକୁ ପ୍ରତିଟି ଗୀତିମୁଗ୍ଧ ଗାୟକ ଗାୟିକା ଯେ ଆପଣା କଣ୍ଠରେ ଚିର ଅଭୁଲା କରି ରଖିବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ବାସ୍ତବିକ ଗୀତିକବିତାର ସାର୍ଥକତା ହିଁ ଗାୟନ କାଳରେ ସହଜରେ ଉପଲବ୍ଧ ହୋଇଉଠେ। ପଠନରେ ଯେତେ ତୃପ୍ତି ଆସିଲେ ମଧ୍ୟ ଶୁଣିବା ପାଇଁ କାନ ଆତୁର-ଜାଗ୍ରତ ହୋଇ ଚାହିଁରହେ।

କବିତାଗୁଡ଼ିକରେ ସୁନ୍ଦର କଳ୍ପନା ବିଳାସ ଏକ କାବ୍ୟିକ-ମୋହରେ ବାନ୍ଧି ଦେବାପାଇଁ ପାଠକ-ଶ୍ରୋତାକୁ ଅବିଳମ୍ବେ ପ୍ରେରିତ କରେ। କଳ୍ପନାର ଚିତ୍ରପଟରେ କହିବାର କଥାଗୁଡ଼ିକ କିପରି ସହଜରେ ଚିତ୍ରାୟିତ ତାହା ନିମ୍ନ ଉକ୍ତିମାନଂକ ମଧ୍ୟରୁ ଆଶୁ-ଅନୁମେୟ।

ଆଖିର ଲୁହରେ ମାପିହୁଏ ନାହିଁ
ଓଠରେ ହସର ଚଇତାଳି।
ଅଥବା
ତୁମଠୁଁ ଦୂରତା ଯେତେ ବଢ଼ିଯାଏ
ସେତେ ଜଳି ଜଳି ଯାଏ,
ତୁମକୁ ସପନେ ଦେଖିବା ପାଇଁକି
ରାତିକି ସାଙ୍ଗରେ ନିଏ,
ଲୁହକୁ ଦେଇଛି ମେଘର ଠିକଣା
ତୁମ ଦେହେ ବରଷିବା ପାଇଁ।
ପୁନଶ୍ଚ
ଉପରେ ହସୁଛି ଫୁଲେଇ ଆକାଶ
ଉଡ଼େଇ ମେଘ,
ଘେରିଛି କୁହୁଡ଼ି ପାହାଡ଼ ସେକଡ଼େ
ଦିଶେନି ଦିଗ,
ଝରା ସେଫାଳୀର ଶେଷ ଅଭିସାର ରହିଛି ଚାହିଁ।

ଏହିପରି ଅନେକ ଦୃଷ୍ଟାନ୍ତର ଉଦ୍ଧୃତି କରାଯାଇପାରେ ଅତି ସହଜରେ। ମାତ୍ର ସେ ସବୁକୁ ବିଚାରଶୀଳ ସର୍ଜ୍ଜନମୁଗ୍ଧ କବିମାନଙ୍କ ହାତରେ ଛାଡ଼ିଦେବାକୁ ମୁଁ ନିରାପଦ ମନେ କରୁଛି। କବିତାଗୁଡ଼ିକର ମଝିରେ ମଝିରେ ଯେଉଁଟିକେ ପ୍ରବହମାନତା କାହିଁ କାହିଁ ବାଧାପ୍ରାପ୍ତ ହୋଇଛି, ସେ ସବୁକୁ କବି ଟିକେ ସଚେତନ ହୋଇ ବୃତ୍ତ-ସ୍ୱର-ଲୟ-ତାଳ ପ୍ରତି ଧ୍ୟାନଶୀଳ ହେଲେ ଆଗାମୀ ଲେଖାଗୁଡ଼ିକରେ ସେସବୁର ଆଶଂକାରୁ ମୁକ୍ତ ହୋଇପାରିବେ ବୋଲି ଅତି ସହଜରେ ଅନୁମେୟ। କବିଙ୍କର କୃତିର ଅସୁମାରୀ ସଫଳତା କାମନା କରୁଛି। ଗୀତିକବିତା କ୍ଷେତ୍ରରେ ତାଂକର ଅନୁପ୍ରବେଶକୁ ଅନେକ ଅନେକ ସ୍ୱାଗତ। କାମନା କରୁଛି ସେ ଯଶସ୍ୱୀ ହୁଅନ୍ତୁ। ତାଙ୍କର ଶ୍ରମ ସାର୍ଥକ ହେଉ।

ଭୁବନେଶ୍ୱର
ତା:୨୧.୦୨.୨୦୧୭

ଶୁଭେଚ୍ଛା ସହ
**ବୃନ୍ଦାବନ ଜେନା**
**ବରିଷ୍ଠ ଗୀତିକବି ଓ ଗବେଷକ**

# ଭୂମିକା

ସାହିତ୍ୟ ଓ ସଂଗୀତର ମିଳିତ ଆବାହନୀରେ ଗୀତିକବିତାର ଜନ୍ମ । ପରିଭାଷା ଓ ପରିପାଟୀରେ ଏହା ଆଧୁନିକ ଗଦ୍ୟକବିତା ଠାରୁ ଭିନ୍ନ । ଶବ୍ଦ ପ୍ରୟୋଗରେ ଶୃଙ୍ଖଳା ଆଚରଣ ସରଳ, ସାବଲୀଳ, ମାର୍ଜିତ ଭାଷାର ସ୍ୱତଃସ୍ଫୂର୍ତ୍ତ ବ୍ୟବହାର, ଛନ୍ଦର ସଫଳ ପ୍ରୟୋଗରେ ପରିପୁଷ୍ଟ ହୁଏ ଗୀତିକବିତାର ରୂପକଳ୍ପ ।

ଅନେକ ଗଦ୍ୟକବିତା ରଚନା କଲାପରେ ଗୀତିକବିତାର ମୋହରେ ପଡ଼ିଗଲି । ଗୋଟିଏ ଦିଓଟି ଲେଖୁଲେଖୁ ସତୁରୀଟି କବିତାର ସୃଷ୍ଟି । ବଂଧୁମାନଙ୍କର ପରାମର୍ଶ କ୍ରମେ ସେହି କବିତା ସବୁକୁ ଏକାଠି କରି ସଂକଳନଟିଏ ପ୍ରକାଶ କରିବାକୁ ନିଷ୍ପତ୍ତି ନେଲି । ମୋର ଅନ୍ତରଙ୍ଗ ବଂଧୁ ଶ୍ରୀଯୁକ୍ତ ସରୋଜ ମିଶ୍ର ବହିଟିର ନାମକରଣ "ଝରି ଝୁରିଯାଏ" କରିଥିବାରୁ ତାଂକୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଜୀବନର ପ୍ରତିଟି ଅବସ୍ଥା ଗୋଟିଏ ଗୋଟିଏ କବିତା । ଅନୁଭବର ପରିସୀମା ଆକାଶ ପରି ପରିବ୍ୟାପ୍ତ, ସଂପର୍କର ପରିଭାଷାରେ ଗୀତିକବିତାର ସ୍ଥାନ କୌଣସି ଏକ ସଂଜ୍ଞା ଓ ସ୍ୱରୂପର ଅନେକ ଊର୍ଦ୍ଧ୍ୱରେ । ଏକ ସରଳ ନିରୋଳା ହୃଦୟରେ ଆନନ୍ଦର ଫଲ୍‌ଗୁ ବୁହାଇବାରେ ଗୀତିକବିତାର ପାରଦର୍ଶିତା ସବୁକାଳରେ ସବୁଯୁଗରେ ଊଣା ଅଧିକେ ଉପଲବ୍ଧ ।

ଆକାଶ, ମାଟି, ପାଣି, ପବନ, ସମୁଦ୍ର, ପାହାଡ଼, ଝରଣା, ଜହ୍ନ, ତାରା, ପ୍ରେମ, ବିରହ, ମିଳନ, ବିଚ୍ଛେଦ, ଅନୁଭବ, ଅନୁଭୂତି, ଅଭିମାନ, ଅନୁରାଗ ଆଦିକୁ ନେଇ ମୋର କବିତା ରଚନା । ଆକାଶର ବିଶାଳତା, ମାଟିର ମୋହ, ପାଣି ଓ ପବନର ସଂଧାନ, ଜହ୍ନ ଓ ତାରାରେ ପ୍ରେମ ଓ ପ୍ରଣୟର ଉପଲବ୍ଧି ଓ ସଂସାରର ଚିରାଚରିତ ଚିତ୍ର ଓ ଦୃଶ୍ୟମାନ ଧାରା ମୋ ମନରେ ଉଦ୍‌ବେଳନ ସୃଷ୍ଟି କରିଛି ଯାହା ମୋତେ କବିତାମନସ୍କ କରିଦେଇଛି ଓ ମୁଁ ସମର୍ପିତ ହୋଇଯାଇଛି ମୋ ଲେଖନୀ ନିଃସୃତ ଗୀତିକବିତାଗୁଡ଼ିକ ପାଖରେ । ବର୍ଣ୍ଣମାଳା ଭିତରୁ ଅକ୍ଷରର ସଂଧାନ, ଅକ୍ଷରକୁ ଅକ୍ଷର ସହିତ ଯୋଡ଼ି ଶବ୍ଦ ଗଠନ, ଶବ୍ଦ ଓ ଶୈଳୀର ଅପୂର୍ବ ସମନ୍ୱୟରେ ଭାବର ପରିପ୍ରକାଶ ଓ କବିତାର ସୃଷ୍ଟି ।

ଏଥିରେ ସନ୍ନିବେଶିତ ସମସ୍ତ କବିତା ଗତ ବର୍ଷକ ଭିତରର ଲେଖାସବୁ । ସମୟର ଶୃଙ୍ଖଳ ଭିତରେ କେଉଁ ଏକ ଅଦୃଶ୍ୟ ଶକ୍ତି ହାତ ଧରି ଲେଖେଇ ଦେଇଛି ସେ ସବୁକୁ । ସାହିତ୍ୟର ଉନ୍ମେଷ କାଳରୁ ସାହିତ୍ୟର ଆକାଶଟି ଶାନ୍ତ ଓ ସୁନୀଳ । ତାର ରୂପ ଲାବଣ୍ୟରେ ବିମୁଗ୍ଧ ପାଠକ ପାଠିକାମାନେ ପୁଲକିତ ଓ ଉଲ୍ଲସିତ ହେଲେ ନିଜକୁ ଭାଗ୍ୟବାନ ମନେକରିବି ଓ ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

**ଗୋବିନ୍ଦ ଚନ୍ଦ୍ର ଦାଶ**

ସୂଚୀପତ୍ର

ସୂଚୀପତ୍ର

# ଆସିବା ଓ ଯିବା...

ଆସିବା ଓ ଯିବା ଲାଗିଛି ଏଠାରେ
ଅସରନ୍ତି ଅନୁରାଗ
ଅମାପ ସ୍ନେହର ଦରିଆ ଦେହରେ
ଅନୁକୂଳ ପାଣିପାଗ ।୦।

ସକାଳ ସୁରୁଜ ଆସିଛି ଓହ୍ଲାଇ
ସବୁ ସମ୍ଭାବନା ଧରି
ଆଲୋକ ଅଂଧାର ଲୁଚକାଳି ଖେଳ
ଦେଖ ଏଠି ମନଭରି
ସୁଖର ଶ୍ରାବଣ ଆପଣେଇ ଅଛି
ସମ୍ପର୍କର ଅଭିଷେକ ।୧।

ପବନ ବହୁଛି ବରଷା ଝରୁଛି
ମାଟିରେ ଲାଗିଛି ମୋହ
ଜହ୍ନ ଏଠି ଅଛି ଜୋଛନା ସାଥିରେ
ପାଗଳ ପ୍ରେମିକ ପ୍ରାୟ
ଆପଣା କରିଲା କରମ ଫଳକୁ
କରିନେବା ଉପଭୋଗ ।୨।

# ଅଳସ ଆଖିର...

ଅଳସ ଆଖିର ନୀଳଜହ୍ନ ତୁମେ
ଅପାଶୋରା ଅନୁଭୂତି
ଫୁଲ ଫଗୁଣର ଫୁଲଝରି ତୁମେ
ଅମାନିଆ ଜହ୍ନରାତି ।୦।

ଅଦିନ ମେଘର ଓଢ଼ଣା ତଳରେ
ନିରୋଳା ଅନ୍ଧକାର ।
ଚେତାଇ ଦେଉଛି ଅବଶ ଆଖିରେ
ଆହତ ଅଶ୍ରୁଧାର
ଭାଗ୍ୟ ସାଜିଅଛି ଭଗାରି ମୋ ସାଥେ
ଦେଉନାହିଁ ସହମତି ।୧।

ଦରିଆ ଦେହରେ ଲହରୀ ଯେପରି
ଅଶାନ୍ତ ଢେଉ ସାଜେ
ଅନ୍ଧ ଆଖିର ଅନ୍ଧାରେ ତୁମକୁ
ବ୍ୟସ୍ତ ହୋଇ ମୁଁ ଖୋଜେ ।
ଝରା ବଉଳର ମଉଳା ମହକ
ସହିଯିବି ମଥାପାତି ।୨।

# ପ୍ରେମ କରି...

ପ୍ରେମ କରି ମୋତେ କି ସୁଖ ପାଇଲ
ପ୍ରତିଦାନେ ଦେଲ ପ୍ରତାରଣା
ନଷ୍ଟ ନୀଡ଼ର ବାହୁଡ଼ା ପକ୍ଷୀ ମୁଁ
ଖୋଜେ ମୁଁ ଟିକିଏ ଆଶ୍ୱାସନା ।୦।

ନୀରବ ରାତିର ନିଦ ଝରକାରେ
ତୁମେ ଆସ ଯେବେ ସ୍ୱପ୍ନ ହୋଇ
ଖିଆଲି ମନର ଖୋଲା ଦରଜାରେ
ଦେହକୁ ମୋ ଜାକିଜୁକି ଦେଇ
ନିଃସଂଗ ବନରେ ନୀଳ ପ୍ରଜାପତି
ଅବଶ ହୋଇଛି ମୋର ଡେଣା ।୧।

ଦେହ ଦେଉଳଟା ଖାଲି ପଡିଅଛି
ଆସୁନା କାହିଁକି ଦିଅଁ ହୋଇ
ଲକ୍ଷେ ଲାଳସାର ଅଭିସାର ଡୋଳି
ବସିଚି ତୁମର ବାଟ ଚାହିଁ
ଆହତ ଆଶାର ଆକୁଳତା ମୋର
କିଛି ନୁହେଁ ଭାଗ୍ୟ ବିଡ଼ମ୍ବନା ।୨।

# ଆହତ ମନର...

ଆହତ ମନର ଦୂର ଦରିଆରେ
ତୁମେ ରହିଗଲ ସ୍ମୃତି ହୋଇ
ବିଗତ ଦିନର କଳାପଟା ପରେ
ହସୁଥିଲ ମୋତେ ଭୁଲିଯାଇ ।୦।

ନିରବ ସଂଜର ନୀଳ ନିର୍ଜ୍ଜନତା
ସାଇତା ପ୍ରେମର ପଦାବଳୀ
ନିଖୁଣ ନିଟୋଳ ବୟସ ଦେହରେ
ବିଗତ ରାତିର ଚଇତାଳି
ହାରିଯାଇଥିବା ହୃଦୟରୁ ମୋର
ଚାଲିଗଲ ତୁମେ ଦାଗଦେଇ ।୧।

ସବୁଜ ସ୍ୱପ୍ନର ପ୍ରତି ପାହାଚରେ
ସୁନ୍ଦର ସ୍ମୃତିର ପାଦଚିହ୍ନ
ସମୟ ନଈର ବଢ଼ିଲା ସୁଅରେ
ଭାସିଯାଏ ଆଶା ସବୁଦିନ
ମୁଠାଏ ମମତା ଟୋପାଏ ସ୍ନେହରେ
ରହିବକି ତୁମେ ବନ୍ଦୀ ହୋଇ ।୨।

# ତୁମ ଆଖି ଆଇନାରେ...

ତୁମ ଆଖି ଆଇନାରେ
ଝଟକୁଛି ରୂପା ଜରି ଜହ୍ନ
ତୁମ ଓଠ ଇଲାକାରେ
ବରଷୁଛି ସୁଖର ଶ୍ରାବଣ ।୦।

ଜୀବନ ଦୀପରେ ଦାଉଦାଉ ଜଳେ
ସ୍ମୃତିର ସଳିତା ଯେତେ
ଭଲ ପାଇବାର ଭୁଲ୍ ବୁଝାମଣା
ଜାବୁଡ଼ି ଧରିଛି ମୋତେ
ମୋ' ଦେହର ଦେଉଳକୁ ପ୍ରିୟା
ତୁମେ ଆସୁଥାଅ ସବୁଦିନ ।୧।

ଲାଜର ଲହରୀ ଛୁଇଁଯାଏ ଆସି
ପ୍ରେମର ଦରିଆ କୂଳ
ସେ ଦରିଆ ବୁକେ ତରୀଟିଏ ପରି
ଦିଶୁଥାଅ ଅବିକଳ ।
କେଉଁ ବାହାନାରେ ଲୁଚିଯାଅ
ତୁମେ ମନେଭରି ଅଭିମାନ ।୨।

# ଝରି ଝୁରିଯାଏ

ବର୍ଷା ଭିଜା ରାତି
ଶ୍ରାବଣ ସାଥୀରେ
ଖୋଜିବୁଲେ ତୁମେ କାହିଁ ବୋଲି
ନିଘୋଡ ନିଦରେ
ସପନ ଦେଖାରେ
ଶୋଇଥାଅ ଫୁଲ ଶେଯ ପାରି ।
ତୁମେ ଯେ ଅଳସ କନ୍ୟା ପ୍ରେମର ଫଲ୍‌ଗୁରେ
ଦିଶ ଆହୁରି ସୁନ୍ଦରୀ ।୦।

ତୁମ ଅଜାଣତେ ବର୍ଷା ଯେବେ
ମଥାପିଟେ ଦାଣ୍ଡ ଦରଜାରେ
ଭାରି ଭାରି ଆଖି ପତା ମୁଦି
କଥା ହୁଅ କେତେ ମୋ ସାଥୀରେ
ତୁମେ ଯେ ବିଳପି ଉଠ ନିଝୁମ ରାତିରେ ବର୍ଷାକୁ
ସାଥୀ ମନେକରି ।୧।

ଓଦା ସରସର ଦେହ ତୁମ
ଖୋଜେ ଯେବେ କାହାର ପରଶ
ଲାଜେ ଲାଜେ ଝରି ଝୁରିଯାଏ
କରି ମନ ଅବଶ ବିବଶ
ଭିଜା ମାଟି ମହକରେ ପ୍ରିୟା ତୁମେ ଝୁମିଯାଅ
ବେଗେ ମନ ଭରି ।୨।

# ଜୀବନ ଯାତ୍ରାର...

ଜୀବନ ଯାତ୍ରାର ପ୍ରତି ପାହାଚରେ
ନିଖୁଣ ତୁମର ପାଦଚିହ୍ନ
ଉଆଁସି ରାତିର ନିର୍ଜନ ପ୍ରହରେ
ତୁମେ ସତେ ଏକ ମଲାଜହ୍ନ ।୦।

ହଜି ଯାଇଥିବା ଦିନଗୁଡା ସବୁ
ଖୋଜିଲେ ଏବେ ବି ମିଳେନାହିଁ
ଲିଭିଯାଇଥିବା ମନରୁ ସରାଗ
ରହିଯାଏ ଖାଲି ସ୍ୱପ୍ନ ହୋଇ
ନିଜର ନିଜର କହି କାହିଁ ଦେଲ
ପ୍ରେମର ସହରୁ ନିର୍ବାସନ ।୧।

ପ୍ରଥମ ପ୍ରେମର ପୂର୍ଣ୍ଣ ପ୍ରତିଶ୍ରୁତି
କାହିଁକି କରିଲ ଅସଫଳ
ହୃଦୟରେ ଯାଗା ରଖିଦେଇଗଲ
ଭାବିଲେ ହେଉଛି ଅସମ୍ଭାଳ
ହାତଛାଡ଼ି ଚାଲିଗଲ ନ କହିକି
ବୃଥାକରି ସବୁ ଆୟୋଜନ ।୨।

# ତୁମେ ଆସ ଧୀରେ ଧୀରେ...

ତୁମେ ଆସ ଧୀରେ ଧୀରେ
ସ୍ୱପ୍ନର ସହରେ
ପାହାନ୍ତି ନିଦର କୋଳେ
ଶୋଇଯିବା ପରେ ।
ମନଖୋଲା ହସ ହସି ଲୋଟିଯାଅ
ଲାଜରେ ଲାଜରେ ।୦।

ତୁମ ହସେ ଫୁଟିଥାଏ ସୁନାର ଗୋଲାପ
ଆଖିରେ ବି ଭରିଥାଏ ପ୍ରେମର ପୁଲକ
ସ୍ୱପ୍ନ ହୁଏ ବୃନ୍ଦାବନ କେଡ଼େ ବେଗି
ତୁମେ ଆସିବାରେ ।୧।

ରାତି ପାହିଯାଏ ତୁମ ଆଖି ଅଳସରେ
କଥା ସରିଯାଏ ତୁମ ଦେହ ପରଶରେ
ମନେ ଭରି ଅଭିମାନ ଚାଲିଯାଅ
ସପନ ଶେଷରେ ।୨।

# ଦିନ ସରିଗଲେ...

ଦିନ ସରିଗଲେ ହାତ ପାହାନ୍ତାରେ
ଧରାଦିଏ ଦୁଷ୍ଟ ସଂଜ
କାମ ସରିଗଲେ ମୁହଁ ବୁଲାଇକି
କର କେତେ ଦହଗଂଜ ।୦।

ତୁମ ଓଠଧାରେ ହସର ଦୀପାଳି
ଦିଶେ କେଡ଼େ ମନୋରମ
ତୁମ ପାଇଁ ଖାଲି ରଖିଛି ସାଇତି
ଜହ୍ନରାତି ଅନୁପମ
ଅବସନ୍ନ ମୋର ଆଖିପତା କହେ
ସବୁତ ତୁମରି ଖଂଜ ।୧।

ତୁମେ ଯାଅ ଭୁଲି ଭଲ ପାଇବାର
ପାଣିଚିଆ ପ୍ରତିଶ୍ରୁତି
ତୁମ ନଜରରେ ଗୋଲାପ ବଣରେ
ମୁଁ ଆହତ ପ୍ରଜାପତି
କେଉଁ ଭରସାରେ ସଜାଇଛ କୁହ
ମଉଳା ମାଳତୀ କୁଞ୍ଜ ।୨।

# ଭାରି ଭାରି ଲାଗେ...

ଭାରି ଭାରି ଲାଗେ ମୋର ଅନୁମାନ
ଅନୁଶୋଚନାର ଅଶ୍ରୁଝରେ
ଭସାମେଘ ଘର ଝରକା ଫାଙ୍କରେ
ଅମାନିଆ ଜହ୍ନ ଉଙ୍କିମାରେ ।୦।

ଘନ ଘୋର ବର୍ଷା କୋହଲାପବନ
ଘୋଟିଗଲା ସାରା ଭୂମଣ୍ଡଳ
ଅଭାବି ମନର ଅବିଶ୍ୱାସୀ ଭାବ
ପାଇଲାନି କିଛି ଥଳକୂଳ
କାହା ଭରସାରେ କେଉଁ ଆଶା ନେଇ
ବଂଚିବି ଏ ମିଛ ସଂସାରରେ ।୧।

ହାତ ପାହାନ୍ତାରେ ଯେତେ ସମ୍ଭାବନା
ସବୁ ତ ମଉଳି ଗଲାପରେ
ପ୍ରତି ମୁହୂର୍ତ୍ତରେ ବଞ୍ଚୁଛି ମରୁଛି
ସମୟ ନଦୀର ସୁଅଧାରେ
ଧୂସର ମଉଳା ଆଶା ଆକାଶରେ
ଏବେ ବି ମୁଁ ତୁମ ଅପେକ୍ଷାରେ ।୨।

# ଫୁଲ ହସେ...

ଫୁଲ ହସେ ଫଗୁଣରେ
ପ୍ରିୟା ହସେ ଅଗିଣରେ
ପ୍ରିୟାର ଓଠରେ ହସ ଫୁଲର ଦେହରେ ବାସ
ନାଚିଉଠେ କାହା ଇସାରାରେ ।୦।

ବାଜି ଉଠେ ମିଳନର
ଶୁଭ ଶଙ୍ଖ ସାହାନାଇ
ଚାରିଆଡେ ବସନ୍ତର
ବାସ୍ନା ସବୁ ବିଞ୍ଚିଦେଇ
ଏମିତି ବେଳାରେ ପ୍ରିୟା
ଅଭିମାନ କର କିଆଁ
ଥରି ଉଠେ ଡରରେ ଡରରେ ।୧।

ତୁମକୁ ଭରସା କରି
ବିତାଇଲି ଦିନରାତି
ଦୁଃଖ ସୁଖ ସବୁ ସହି
କରିଲି ତୁମକୁ ସାଥୀ
ତୁମ ମନ ପରଦାରେ ତୁମ ଆଖି ପଲକରେ
ଲୁଚିଯାଏ ଲାଜରେ ଲାଜରେ ।୨।

# ହସିଲେ ଦିଶୁଚି...

ହସିଲେ ଦିଶୁଚି ହସ୍ତିନାପୁର
ପରାଜିତ ପଶାଖେଳ
ରକ୍ତରେ ଭରିଚି ରଂଗ ଅବିର
ଅମାନିଆ ଅସମ୍ଭାଳ ।୦।

ହାରିବାର ମନ ନେଇ ହାରିଗଲେ
ବାଧେ ନାହିଁ ବେଶୀ
ଜିତିବାର ଜିଦ୍ ନେଇ ଜିତିଗଲେ
ଲାଗେ ଭାରି ଖୁସି ।
ହାରିବା ଜିତିବା ଦୁଇଟି ରାସ୍ତା
ସେ ତ ରାତି ଓ ସକାଳ ।୧।

ଭୁଲିବାର ମନ ନେଇ ଭୁଲିଗଲେ
ମନେରହେ ନାହିଁ
ହେଜିବାର ସ୍ୱପ୍ନ ନେଇ ଝୁରିହେଲେ
ମନେଯାଏ ରହି
ଭୁଲିବା ହେଜିବା ଦୁଇଟି ଭାବ
ସରଳ ଆଉ ଜଟିଳ ।୨।

# ନୀରବି ଯାଏ...

ନୀରବି ଯାଏ ଚାରିଆଡ଼
ଝଡ଼ ପରେ ପରେ
ନରମି ଯାଏ ଜଳୁଥିବା
ନିଆଁ ଛାତି ତଳେ ।୦।

ପ୍ରେମର ଝଡ଼ ଉଠେ ପ୍ରେମିକର
ଅସଫଳ ଅଭାବି ମନରେ
ଲୁହର ଜହର ଝରି ଆଖିକୁ
ଓଦାକରେ କେଡ଼େ କାଇଦାରେ
ହଜିଲା ଦିନ ହେଜି ହୁଏ
କାହିଁ ବଳେ ବଳେ ।୧।

ଆଖିକୁ ଦିଶୁଚି ସବୁ ଅଲୋଡ଼ା
ଅସମର୍ଥ ସମଗ୍ର ପୃଥିବୀ
ପ୍ରେମରେ ଖୋଜୁଛି ଖାଲି ଅବୁଝା
ଅମାନିଆ ମନ ପ୍ରତିଛବି
ପ୍ରୀତିଭରା ଫଲ୍‌ଗୁ ଝରେ
ନିଭୃତ ବେଳାରେ ।୨।

# ଯେବେ ଖରାବେଳେ...

ଯେବେ ଖରାବେଳେ ନିର୍ଜନ ପ୍ରହରେ
ଚାରିଆଡ଼ୁ ଲାଗେ ଖାଁ ଖାଁ
ପ୍ରେମର ପଣତ ପାରି ଦେଇ ତୁମେ
ଶୁଆଇ ଦିଅ ମୋର ଗାଁ ।୦।

ଚାହାଣୀ ତୁମର ଚାତକ ପରିକା
ହସ ତ ବରଷା ଧାର
ନଜର ତୁମର ନିଜର ହେବାକୁ
ସବୁ କରିଦେଇ ପର
ସୁନାର କଙ୍କଣ ଲୋଭରେ ପଡ଼ି ମୁଁ
ଭୁଲିଗଲି ବାପା ମାଆ ।୧।

ଭଲ ପାଇବାର ବନ୍ଧବାଡ଼ ଡେ଼ଇଁ
ଶିଖିଗଲି କ'ଣ ପ୍ରେମ
ଅଜାଣତେ ମୋର ଏତେ ସରି ହେଲି
କରିଦେଲ ବଦନାମ ।
ପାହାନ୍ତି ପହର ପୁନିଅ ଜହ୍ନରେ
ଲେଖିଦେଲ ମୋର ନାଆଁ ।୨।

# ତୁମେ କବି ମୋର...

ତୁମେ କବି ମୋର
ମୁଁ ତୁମ କବିତା
ତୁମେ ଦୀପଶିଖା
ମୁଁ ତାର ସଳିତା
କେଉଁ କପାଳର କାରୁବାକୀ ତୁମେ
ମୁଁ ଚିରୁଡ଼ାଏ ଚନ୍ଦନର ଚିତା ।୦।

ତୁମେ ଗୀତ ମୋର
ମୁଁ ତା'ର ରାଗିଣୀ
ତୁମେ ଟିପାଖାତା
ମୁଁ ପରା ଟିପ୍ପଣୀ
କେଉଁ ଆକାଶର ଅରୁନ୍ଧତୀ ତୁମେ
ମୁଁ ଅସ୍ତଗାମୀ ବିଦାୟୀ ସବିତା ।୧।

ତୁମେ ସ୍ୱପ୍ନ ମୋର
ମୁଁ ଯେ ସମ୍ଭାବନା
ତୁମେ ଆଶା ମୋର
ମୁଁ ତ ଆଶ୍ୱାସନା
କେଉଁ କାହାଣୀର କଳାବତୀ ତୁମେ
ମୁଁ ପ୍ରାଣବନ୍ତ ପ୍ରଣୟର କଥା ।୨।

# ଜୀବନରେ ଯେବେ...

ଜୀବନରେ ଯେବେ ଶେଷଥର ଲାଗି
ତୁମକୁ ଭେଟିଲି ମୁହିଁ
କହିବାର ମୋର ବହୁକିଛି ଥିଲା
କହିତ ପାରିଲି ନାହିଁ ।୦।

ସନ୍ଦେହୀ ମନ ମୋ ବୁଝିଗଲା ସବୁ
ଘଟିଥିବା ଘଟଣାକୁ
ଅପବାଦ ଦେଇ ଭୁଲି ଯାଇଥିଲି
ତୁମ ଭଲ ପାଇବାକୁ
ତଥାପି ତ ତୁମେ ରହିଥିଲ ମୋର
ହୃଦୟରେ ଦାଗ ହୋଇ ।୧।

ଉଡୁଥିବା ଗୁଡ଼ି ଲୁଚିଗଲା କାହିଁ
ନଟେଇରୁ ଛିଡ଼ି ଯାଇ
ସମ୍ପର୍କର ଡ଼ୋର ଛିଡ଼ି ଯାଇଥିଲା
ସତେ ସବୁଦିନ ପାଇଁ
କାହା ଇସାରାରେ ପାଖକୁ ଆସିଲା
ବଳେ ବଳେ ଧରା ଦେଇ ।୨।





# ମନ ହୁଏ...

ମନ ହୁଏ କୁହୁତାନ
କଳାର କୁହୁକ
ଜହ୍ନହୁଏ ଫୁଲବନ
ମଧୁର ମହକ
ସେ ମନର ଡେଣା ନାହିଁ
ସେ ଜହ୍ନ ଅଗଣା ନାହିଁ
ତଥାପି ସେ
ଉଡୁଥାଏ ରାଇଜ ଗୋଟାକ ।୦।

ଜାତି ଜାତି ଫୁଲ ଫୁଟେ
ସେ ବନରେ
ମନ ହୋଇ ପ୍ରଜାପତି
ଉଡିବୁଲେ
ସତେ ଏକ ପାଗଳ ପ୍ରେମିକ ।୧।

ଜହ୍ନ ଲୁଚିଯାଏ ଭସା
ମେଘ ଦେହେ
ମେଘ ଘୁଞ୍ଚିଯାଏ ଜହ୍ନ
ଥିବା ଯାଏ
ସତେ ଏକ ଅଲିଭା ଆଲୋକ ।୨।

# ଫୁଲ ହୋଇ...

ଫୁଲ ହୋଇ ଯେବେ
 ଦେଇପାରିଲାନି ପୁଲକ
ଜହ୍ନ ହୋଇ ଯେବେ
 ଦେଇପାରିଲାନି ଆଲୋକ
ସେ ଫୁଲକୁ କେହି ଲୋଡ଼େ ନାହିଁ ସେ ଜହ୍ନଟି
 ଲାଗେ ଖାଲି ଦୁଃଖ ଦୁଃଖ ।୦।

ଫୁଲରେ ତିଆରି ଶେଯ
 ହେଲା ନାହିଁ ଭୋଗ
ଜହ୍ନ ଖେଳିଲାନି ପାଶେ
 ଦେଇ ଅନୁରାଗ
ଚାହୁଁ ଚାହୁଁ ଭୁଲିଗଲି ଜହ୍ନର ଜୋଛନା
 ପୁଣି ଫୁଲର ମହକ ।୧।

ଲୋଡା ହେଲା ଫୁଲ ଯେବେ
 ମରଣ ଦେହରେ
ଜହ୍ନ ଦେଖି ଲୁଚିଗଲା
 କାହା ବିରହରେ
ମଉଳିଗଲା ସେ ଫୁଲ ଚାହୁଁ ଚାହୁଁ ଜହ୍ନ
 ଦିଶେ ମଳିନ ବିମୁଖ ।୨।

# ଟିକିଏ ହସ ପାଇଁ...

ଟିକିଏ ହସ ପାଇଁ
ଏତେସବୁ ଆୟୋଜନ
କ୍ଷଣିକ ମୃତ୍ୟୁ ପାଇଁ
ଅଲୋଡ଼ା ଏହି ଜୀବନ ।୦।

ହସରେ ମାତି ମୁଁ ହରାଇଛି
ମୋର ସବୁକିଛି
ମୃତ୍ୟୁକୁ ଭାବି ଭାବି ଡରରେ
କେମିତି ବଂଚିଛି
ଆଖି ଲୁହେ ମାପୁଛି
ମୋର ପ୍ରାଣର ସ୍ପନ୍ଦନ ।୧।

ସୁଖର ସଂଧାନ କରେ ମୋତେ
ଖାଲି ଆନମନା
ବିଷୟ ବଂଧନେ ବାନ୍ଧି ହୋଇ
ହୁଏ ବାଟବଣା
ସୁଖରେ ଦୁଃଖରେ ମୁଁ
ଘାରିହୁଏ ପ୍ରତିଦିନ ।୨।

# ଏମିତି ବି କେତେ ଦିନ...

ଏମିତି ବି କେତେଦିନ ବଂଚିବି ମୁଁ ଆଉ
ବାଲିରେ ବାଂଧିବି ବଂଧ ବେଳ ଥାଉଁ ଥାଉଁ
ମାରିବ ଶୂନ୍ୟ ଲହଡ଼ି ବନ୍ଧ ପଡ଼ିବ ଭୁଷୁଡ଼ି
କଥା କହୁ କହୁ ।୦।

ସୁଅ ମୁହଁ ପତର ମୁଁ
କୂଟାଖିଏକୁ ଖୋଜୁଛି
ଯେତେ ଲୁଚାଇଲେ ମୋର
ଗୋଡ଼ ଦିଇଟା ଦିଶୁଛି
ଭାଗ୍ୟଟା ସଳଖ ବୋଲି ଏତେଦିନ ବଂଚିଗଲି
କାଳ ହେଉ ହେଉ ।୧।

ସୁନାର ମାୟା ମିରିଗ
ଯେବେ ମୋତେ ଦେଖାଦେଲା
ମରିଚିକା ପଛେ ଧାଇଁ
ଜୀବନଟା ବିତିଗଲା
ପାଇଲିନି ଥଳକୂଳ ହେଲି ମୁଁ ଭାବବିହ୍ୱଳ
ଦୁଃଖ ସହୁ ସହୁ ।୨।

# ନିଜେ ତ ନିଜର ନୁହଁ...

ନିଜେ ତ ନିଜର ନୁହଁ
କିଏ କାହିଁ ହେବ ମୋ ନିଜର
କାହାକୁ କହିବି ନିଜ
କାହାକୁ ବା କହିବି ସେ ପର ।୦।

କାନକୁ ଦି'କାନ ହେଲେ କଥା
ହୁଏ ବ୍ୟଥାର କାରଣ
କହିହୁଏ ନାହିଁ ସବୁବେଳେ
ଶାନ୍ତ ମଧୁର ବଚନ
କାହାକୁ ସୁହାଏ ପୁଣି
କିଏ ହୁଏ ନିରବ ନିଷ୍ଠୁର ।୧।

ବଢ଼ିଲା ନଈ ଯେମିତି
ଧୀରେ ଧୀରେ କୂଳ ଖାଇଯାଏ
ବାଧିଲା କଥା ହୃଦକୁ
ସେମିତିକା ନଷ୍ଟ କରିଦିଏ
ହାରିବା ଜିତିବା ହୁଏ
ନିଛକ ମୋ ସାଥୀ ଜୀବନର ।୨।

# ଯିଏ ଯେତେ...

ଯିଏ ଯେତେ କଥା କହିଯାଉ ପଛେ
ତୁମ ନାଆଁରେ
ବଞ୍ଚିଥିବାଯାଏ ରହିଥିବ ତୁମେ
ମୋ ହୃଦୟରେ ।୦।

ଅମାନିଆ ତୁମ ଅଭିମାନ ଭରା
ଚାହାଣୀ ଦେଖି
ଡ଼ରିଯାଏ ନାହିଁ ଚଳେଇ ନିଏ ମୁଁ
ଭରସା ରଖି
ହାରିବା ଜିତିବା ଭାଙ୍ଗିବା ଗଢ଼ିବା ତୁମ ହାତରେ ।୧।

ଲୁହର ସାଗରୁ କୋହ ମୋର ସବୁ
ଲହରୀ ହୁଏ
ଗହନ ନିଦରେ ସ୍ୱପ୍ନ ରାଇଜର
କୂଳକୁ ଛୁଏଁ
ଅନାଇ ବସିଛି ତୁମ ଆସିବାକୁ ଏଇ ବେଳାରେ ।୨।

# ତୁମେ ଅଛ...

ତୁମେ ଅଛ ଏବେ ଅନେକ ଦୂରରେ
ଶୀତଳ ସବୁଜ ରାତି
ଅବୁଝା ମନକୁ ବୁଝେଇବା ପାଇଁ
ଦେଉଛି ମୋ ହାତ ପାତି ।୦।

ହାରିବା ଜିତିବା ହସିବା କାନ୍ଦିବା
ସହଚର ଜୀବନର
ଚିହିଁବା ପଣକୁ ଆପଣେଇବାକୁ
କିଏ ଅଛି ଆପଣାର
ବଳକା ଜୀବନ କାଟିଦେବା ପାଇଁ
ତୁମକୁ କରିବି ସାଥୀ ।୧।

ଆଶାର ଆକାଶ ଅବଶ ହୋଇଛି
ଜହ୍ନ ହୁଏ ବାଟବଣା
ଅଶାନ୍ତ ମନ ମୋ ବିଳପି ଉଠୁଛି
ଖୋଜୁଛି ତୁମ ଠିକଣା
ଖିଆଲି ଭାବର ଖେଳୁଆଡ଼ ସାଜି
ବିତାଇବି ଦିନରାତି ।୨।

# ପ୍ରଥମ ଦେଖାରେ...

ପ୍ରଥମ ଦେଖାରେ
ପ୍ରିୟା ଭାରି ଲାଜ କଲା
ସ୍ୱପ୍ନରେ ସ୍ୱପ୍ନରେ
ସିଏ ମୋତେ ଧରା ଦେଲା ।
ମିଠା ମିଠା ତା ଓଠର କଥା
ହସରେ ହସରେ ତା'ର ନଜର ଲାଗିଲା ।୦।

ରାତି ପାହିଗଲା ପରେ
ସ୍ୱପ୍ନ ହଜିଯାଏ
ନିଦ ଭାଂଗିଗଲା ପରେ
ରାତି ପର ହୁଏ
ପ୍ରିୟାକୁ ଚାହିଁଦେଲେ ସେ
ମୁହଁକୁ ଫୁଲାଏ
ସ୍ୱପ୍ନକୁ ଭାବିଲେ ବି ସେ
ଭୁଲି ହୋଇଯାଏ
ସୁନ୍ଦର ସେ ଫୁଲବନ ଜଳୁଥିବା ଯଉବନ
ମୋତେ ପାଗଳ କରିଲା ।୧।

ରାତିର ଓଢ଼ଣା ତଳେ
ସ୍ୱପ୍ନର ସାଗର
ଭାସି ଭାସି ଯାଏ ମୋର
ବୋଇତ ସ୍ମୃତିର
ନାଲି ଅଧରରେ ତା'ର
ଫୁଟିଛି ଗୋଲାପ
ଅମାନିଆ ବୟସରେ
ପ୍ରୀତିର ପୁଲକ
ଲାଜ ଲାଜ ସରାଗରେ ଅନୁପମ ଆବେଗରେ
ମୋତେ ମହକାଇ ଦେଲା ।୨।

# ତୁମ ପାଇଁ...

ତୁମ ବିଶ୍ୱାସର ପାହାଚରେ ଦେଖି
ସବୁଜସୁନ୍ଦର ରଂଗ
ତୁମ ପାଇଁ ମୁହିଁ ରଖିଛି ସାଇତି
ଅସୁମାରୀ ଅନୁରାଗ ।୦।

ସବୁବେଳେ କୁହ ପଳାଇ ଆସିବ
ଯେଉଁଠି ଥିଲେ ବି ମୁହିଁ
କେଉଁ ଅପରାଧେ କରିଦେଲ ପର
ମୋତେ ସବୁଦିନ ପାଇଁ
ମନ ଝରକାର ପରଦା ସେକଡ଼େ
ଏବେ ତୁମେ ଅସ୍ତରାଗ ।୧।

କଥାଦେଇ ତୁମେ କଥା ରଖିଲନି
ବିଳପି ଉଠୁଛି ମନ
ନିଃସଂଗ ରାତିର ନିର୍ଜନ ଦ୍ୱୀପରେ
ଦେଇଗଲ ନିର୍ବାସନ
ନିଖୋଜ ଜହ୍ନର ଭାବନେଇ ତୁମେ
ସାଜିଗଲ ପଳାତକ ।୨।

# ଚାହାଣୀକୁ ମୋର...

ଚାହାଣୀକୁ ମୋର ପିନ୍ଧିଦିଅ ତୁମ
ଆଖିରେ କଜ୍ଜଳ ଗାର କରି
ଓଠର ହସକୁ ନେଇଯାଅ ତୁମେ
ସବୁଦିନ ପାଇଁ ସାଥୀ କରି ।୦।

ଲାଜକୁ ମୋହର ବୋଲି ହୋଇଯାଅ
ଦେହରେ ତୁମର ବାସ୍ନା ଭଳି
ବିରହ ବେଦନା ଝୁରି ହେଉଥାଅ
ଅନ୍ତରେ କୋହର ଧୂପ ଜାଳି
ଭରସାରେ ମୋର ଦେଖିଯାଅ ଥରେ
ଭଲ ପାଇବାର ବାହାଦୂରି ।୧।

ରକତ ମୋହର ଜଳୁଥାଉ ତୁମ
ସିନ୍ଥିରେ ସିନ୍ଦୁର ଗାର ହୋଇ
ପ୍ରେମକୁ ପରାଣ ଦେହରେ ମିଶାଅ
ସବୁ ବଂଧନକୁ ଏଡ଼ିଦେଇ
କଅଁଳ ହାତରେ ପିନ୍ଧିଦିଅ ମୋର
ଆଶାକୁ ଦି'ପଟ ଶଙ୍ଖାକରି ।୨।

# ତୁମ ଆଖି ଆଇନାରେ...

ତୁମ ଆଖି ଆଇନାରେ ଦିଶିଯାଏ
କେତେ ଚିହ୍ନା ମୁହଁ
ତୁମ ନଖ ଦରପଣେ ନାଚିଉଠେ
ହଜିଥିବା ଦେହ ।୦।

କୋହଭରା ହୃଦୟରେ କାହିଁ ମୋତେ
ସବୁବେଳେ ଖୋଜ
ଶୋକାତୁର ସମୟର ସବାରୀରେ
ପାଇବା ସହଜ
ନିରବ ଅଶ୍ରୁର ନିରୋଳା ନିଆଁରେ
ମୋତେ ଜାଳିଦିଅ ।୧।

ଜଳିଗଲା ପରେ ମୋ ପୋଡା ଦେହର
ପାଖେ ଟିକେ ବସ
ଭଲପାଇବାର ଭରସା ଟିକକ
ହୋଇଛି ପାଉଁଶ
ଯେତେ ଖୋଜିଲେ ବି ଯେତେ ଚାହିଁଲେ ବି
ମୋତେ ଭୁଲିଯାଅ ।୨।

# ଛାଇ

ଭଲଲାଗେ ମୋତେ ଭାରି ଭଲଲାଗେ
ଛାଇ ସହ କଥା ହେବା ପାଇଁ
ଛାଇ ବଢ଼େ ଛାଇ କମେ ଚାଲିଥାଏ
ଆଲୋକରେ ଅନ୍ଧକାର ହୋଇ ।୦।

ଛାଇକୁ ଡରଇ କଅଣ କରୁଛି
ମୁଁ ଯେ କାଳେ ସିଏ ଦେଖିଦେବ
ସମୟ ସୁବିଧା ଦେଖି ଚାରିଆଡ଼େ
ସିଏ ସବୁ କହି ଚାଲିଥିବ
ଏଠି ଅଛି ସିଏ ପୁଣି ଏଠି ନାହିଁ
କେତେବେଳେ ଦିଶେ ରହି ରହି ।୧।

ଛାଇଆସେ ନିଶବଦେ ଚୁପି ଚୁପି
ଆନନ୍ଦରେ ହୁଏ ମୁଁ ଅଧୀର
ଛାଇକୁ କରଇ ସାକ୍ଷୀ ଲେଖିଥିବା
ଅନୁଭୂତି ଭରା କାହାଣୀର
ଚାଲୁଛି ମୁଁ କେଉଁକାଳୁ ଚାଲୁଥିବି
ହାତ ତା'ର ଧରାଧରି ହୋଇ ।୨।

# ଅସରାଏ ମେଘ...

ଅସରାଏ ମେଘ ଏଠି ବର୍ଷିଗଲା ପରେ
ଭିଜାମାଟି ମହକରେ ହୁଏ ମୁଁ ବିଭୋର
ଅଶାନ୍ତ ଅନ୍ଧାର ରାତି ପାହିଗଲା ପରେ
ଭେଟେ ମୁହିଁ କଅଁଳିଆ ସଫେଦ୍ ସକାଳ ।୦।

ମେଘ ସହ କଥା ହୁଏ ଅତି ଗୋପନରେ
ଆକାଶକୁ ଲୁଚେଇ ଲୁଚେଇ ଧୀରେ ଧୀରେ
ବର୍ଷା ହୋଇ ଝରିଯାଏ ମେଘକୁ ଆଢ଼େଇ
ଜାଣେନାହିଁ ମାଟି ଓଦା ହୁଏ କେତେବେଳେ
କଥା ସରେ ନାହିଁ ହେଲେ ରାତି ପାହିଯାଏ
ଛାଡିଯାଏ ସ୍ୱପ୍ନଭିଜା ପାହାଡ଼ ନିଦର ।୧।

ସକାଳର ସରଳିଆ ସୁଖ ନେଇ ମୁଁ ଯେ
ଖୋଜୁଥାଏ ବିଗତ ରାତିର ସ୍ୱପ୍ନସବୁ
ଦୂର ଦୂର ଭାବନେଇ ପାଖେଇ ଆସିଲେ
ସବୁକିଛି ଦୂରେଇ ଯାଆନ୍ତି ଭାବୁ ଭାବୁ
ଦୂର ପାଖ କିଛି ନାହିଁ ପରିବେଶ ଖାଲି
ସଂପର୍କର ସୂତ୍ରଧର ଆଗାମୀ ଦିନର ।୨।

# କହିବାକୁ ଲାଜ...

କହିବାକୁ ଲାଜ କର କାହିଁ
ମୋତେ ଭଲ ପାଅ ବୋଲି
ଦେଖିଦେଲେ ଲୁଚିଯାଅ କାହିଁ
ମନ ଲାଗେ ମରୁ ବାଲି ।୦।

ଦେହର ଅଳସ ନେଇଯାଏ
ତୁମ ହାତର ପରଶ
ଚେନାଏ ଚେତନା ଭରେ ନାହିଁ
ତୁମ ମନରେ ବିଶ୍ୱାସ
ଯେତେ ବୁଝାଇଲେ ବୁଝ ନାହିଁ
କେଡ଼େ ବେଗେ ଯାଅ ଚାଲି ।୧।

ସମ୍ପର୍କର ହାତ ବଢାଇଲେ
ଖାଲି କର ନାହିଁ ନାହିଁ
ମିଠା ମିଠା କଥା ଦିଇପଦ
ରହିଯାଏ ସ୍ମୃତି ହୋଇ
ବିଳାସ ବିଭୋର ସାରାରାତି
କେମିତି ବା ଯିବି ଭୁଲି ।୨।

# ଆଖିରେ ଆଖିରେ...

ଆଖିରେ ଆଖିରେ
ତୁମେ କଥା କୁହ
ଚାହାଣୀରେ ମୋତେ
କେତେ ଭଲ ପାଅ
ତୁମର ଅଳସ ଦେହେ ପ୍ରୀତିର ପରଶ ପାଇଁ
ମୋତେ ପାଗଳ କରାଅ ।୦।

ହୃଦୟରେ ଜଳୁଥାଏ
ଭଲ ପାଇବାର ନିଆଁ
ଚାରିଆଡ଼େ ଦିଶୁଥାଏ
ତୁମ ପ୍ରେମର ଦୁନିଆ
କଥାରେ କୁହୁକ ଡ଼ୋରି
ମିଠା ମିଠା ଶବ୍ଦ କହି
ମୋତେ ଟିକେ ସ୍ନେହ ଦିଅ ।୧।

ତୁମକୁ ଦେଖିବା ଦିନୁ
ଦେହେ ଆସେ ଶିହରଣ
ଭଲ ପାଇବାର ନିଶା
ମନେ ଆଣେ ଆଲୋଡ଼ନ
ଲାଜ ଲାଜ ଆଖିରେ ଗୋ
ସରାଗରେ ମୋ ସାଥିରେ
ପ୍ରିୟା ପଦେକଥା ହୁଅ ।୨।

# ଜୀବନ ଅଛି ତ...

ଜୀବନ ଅଛି ତ ଯନ୍ତ୍ରଣା ଅଛି
ବେଳ ଥାଉଁ ଥାଉଁ ବଂଧ ବାନ୍ଧୁଛି
ଅବେଳରେ ଯେବେ କେବେ    ଦେଖାହୁଏ କାହା ସଙ୍ଗେ
ଖାଲି ତା' ନିଜ କଥା ସିଏ କହି ବସୁଛି ।୦।

ମାୟା ତ ମୋହିଛି ମନ ଆକାଶ
କାମନା କରିଛି ଦୁଃଖ ପ୍ରକାଶ
ବିଷୟ ଧରିଛି ଇନ୍ଦ୍ରି ଜାବୁଡ଼ି
ନିସ୍ତାର ମିଳିବ କେବେ କେଜାଣି
ଦୁନିଆର ରଂଗମଂଚେ    ଅଭିନୟ ସାରି ନିଜ
କେଡ଼େବେଗେ ସିଏ ଏଠୁ ପଳାଇ ଯାଉଛି ।୧।

ସୁଖକୁ ଖୋଜୁଛି ଖାଲି ଏ ମନ
ଭୁଲିଯାଇ ସବୁ ମାନ ସମ୍ମାନ
ଆପଣାଇବାକୁ ଦୁଃଖ ଯେତେକ
କେହି ରାଜି ନୁହେଁ ରାଇଜ ଯାକ
ଭରସାରେ କାହାର ସେ    ଅପେକ୍ଷା କରିବ ଏଠି
ଚାହୁଁ ଚାହୁଁ ତା ସୁଖର ଦିନ ସରି ଆସୁଛି ।୨।

# ହାତ ଧରି ମୋ...

ହାତଧରି ମୋ ଚାଲିବ କହୁଛ
ହେଲେ ପାରୁନ ଚାଲି
କହିବ କହିବ କହୁଛ ଖାଲି
ହେଲେ କହୁନ ଖୋଲି ।୦।

ଓଠର ବିଲରେ ଫୁଟିଛି ଫୁଲ
ଭଅଁରର ଦେଖା ନାହିଁ
ଝରଣା ଜଳରେ ଖେଳୁଛି ଛାଇ
ଉପର ଓ ତଳ ହୋଇ
ସକାଳ ସୁନେଲୀ ଖରାରେ ଦେଖ
ମୁହଁ ପଡ଼େ ଝାଉଁଳି ।୧।

ଭଲରେ ଭଲରେ ବଂଚିବ ତୁମେ
ମୋତେ ବି ପାଶୋରି ଦେଇ
କଥାରେ କଥାରେ କହିବ ମୋତେ
ସତରେ ଗପଟେ ହୋଇ
ମରିବା ଆଗରୁ ଦେଖିବି ମୁଁ ଯେ
ଖୁସିରେ ଅଛ ବୋଲି ।୨।

# ସପନର ପଥେ...

ସପନର ପଥେ ମୋର ଅଜାଣତେ
ଡାକେ କିଏ ମୋତେ ବାରମ୍ବାର
ମୋ ଆଖି ଧାରରେ ଲୁହ ସାଗରରେ
ଭାସିଯାଏ ସ୍ମୃତିର ସମ୍ଭାର ।
କିଏ ଆସି କାନେ ମୋ କହିଯାଏ
ତୁମେ ଖାଲି ମୋର ନିହାତି ନିଜର ।୦।

ତୁମ ଦେହରେ ଅଳସ ଭାଙ୍ଗୁଥିଲା
ଫୁଲର ଫଗୁଣ
ତୁମ ସାଥିରେ ଆଳାପ କରୁଥିଲା
ସୁଖର ଶ୍ରାବଣ
ତୁମ କଥାରୁ ଝରି ପଡୁଥିଲା
ଅସରାଏ ପ୍ରେମ ଭଲ ପାଇବାର ।୧।

ସମୟ ସୁଅରେ ଭାସି ଯାଉଥିଲା
ଅନେକ ଭାବନା
ଆଶାର ଡ଼ୋରିରେ ବଂଧା ହୋଇଥିଲା
କେତେ ଯେ କଳ୍ପନା
ଚହଲିଗଲା ମନ ମାନିଲାନି
କିଛି ଯେ ବନ୍ଧନ ନିଜର ହେବାର ।୨।

# ଭଲ ପାଇବାର...

ଭଲ ପାଇବାର ସରଳରେଖାଟି
ବଙ୍କା ଦିଶିଲା
ଏତେଦିନ ଆମେ ଏକାଠି ରହିକି
କି ଲାଭ ହେଲା ।୦।

ବଢ଼ିଲା ଗଛଟି ଫୁଲ ଫଳ ଥାଇ
ପଡ଼େ ଝାଉଁଳି
ଏମିତି ଲାଗୁଛି ଟିକେ ପବନରେ
ପଡ଼ିବ ଟଳି
ଭଲ ପାଇବାକୁ ଭୁଲିଯିବା ପାଇଁ
ମନ ଚାହିଁଲା ।୧।

ଯାହା ଚାହୁଁଥିଲି ତୁମଠାରୁ ମୁହିଁ
ଦେଲନି କାହିଁ
ଯାହା ଖୋଜୁଥିଲି ତୁମ ଭିତରେ ମୁଁ
ପାଇଲି ନାହିଁ
ସଜ ଗୋଲାପଟେ କେଡ଼େ ବେଗେ ଫୁଟି
ମଉଳି ଗଲା ।୨।

# ଚାହିଁ ବସିଥିଲି...

ଚାହିଁ ବସିଥିଲି ତୁମ ଆସିବାକୁ
ଆସିଲ ନାହିଁ
ବାମନ ହାତଟା ବଢ଼ାଏ ଜହ୍ନକୁ
ପାଇବି କାହିଁ ।୦।

ମେଘର ଝରକା ଫାଙ୍କେ ଜହ୍ନ ହୋଇ
ଦେଖିଲ ମୋତେ
ପବନ ଦୋଳିରେ ଝୁଲି ହାତଠାରି
ଡ଼ାକିଲ କେତେ
ଭସା ବାଦଲରେ ଭାସି ଥଳକୂଳ
ପାଇଲି ନାହିଁ ।୧।

ଉପରେ ହସୁଚି ଫୁଲେଇ ଆକାଶ
ଉଡ଼େଇ ମେଘ
ଘେରିଛି କୁହୁଡ଼ି ପାହାଡ଼ ସେକଡ଼େ
ଦିଶେନି ଦିଗ
ଝରା ଶେଫାଳିର ଶେଷ ଅଭିସାର
ରହିଛି ଚାହିଁ ।୨।

# ତୁମେ ଆସ ଜହ୍ନ ହୋଇ...

ତୁମେ ଆସ ଜହ୍ନ ହୋଇ ଆକାଶେ ମୋ
ଖାଲି ହଜିଯିବା ପାଇଁ
ଭସାମେଘ ସାଂଗେ ଖେଳିବାକୁ ସତେ
କିଆଁ କର ନାହିଁ ନାହିଁ ।୦।

ବରଷା ବତାସେ ଓଦା ଦେହ
ତୁମ ଲାଜ କରେ
କେଡ଼େବେଗି ତୁମେ ଲୁଚିଯାଅ
ଘନ ଅନ୍ଧାରରେ
ଚିରଦିନ ତୁମେ ହୃଦୟରେ ମୋର
ରହିଯାଅ ଦାଗ ହୋଇ ।୧।

ପିନ୍ଧିଲେ ତୁମକୁ ଛିଟଶାଢୀ ଖଣ୍ଡେ
ଭାରି ଭଲ ମାନେ
ଅଳସ ଆଖିରେ କଜଳର ଗାର
ମୋ ମନକୁ କିଣେ
ଆହୁରି ସୁନ୍ଦରୀ ଦିଶୁ ଥାଅ ତୁମେ
ଅଭିମାନୀ ମନ ନେଇ ।୨।

# ଆମ ଗାଁ...

ଆମ ଗାଁ ମଶାଣି ଦିଶୁଛି
ମୋତେ ସ୍ୱର୍ଗ ଦ୍ୱାର
କି ଧନୀ ଗରିବ ଏଠାରେ
ସବୁ ଏକାକାର ।୦।

ରାଶି ରାଶି ପାପପୁଣ୍ୟ
ସବୁ ଜଳିଯାଏ
ଜନ୍ମଠାରୁ ମୃତ୍ୟୁଯାଏ
ଯାହା ଅର୍ଜିଥାଏ
ପବିତ୍ର ତାହାର ମାଟି କୋଟି କୋଟି
ତା'ରେ ନମସ୍କାର ।୧।

ମୃତ୍ୟୁ ଅଟେ ଚିରନ୍ତନ
ସତ୍ୟ ଓ ଶାଶ୍ୱତ
ତାକୁ ଆଶ୍ରା ଦେଇ କରେ
ଜୀବନ ସାର୍ଥକ
ମାଟି ଦେହେ ମିଶିଯାଏ ପଞ୍ଚଭୂତେ
ଗଢା ଏ ଶରୀର ।୨।

# ଧୀର ଚାଲି...

ଧୀର ଚାଲି ତୁମର ଯେ
ମଥାରେ ଓଢ଼ଣା
କେତେଦିନ ରହିଥିବ
ଅଜଣା ଅଶୁଣା ।୦।

ଗୁଣୁ ଗୁଣୁ ଗାଉଅଛ
କିଏ ବା ଶୁଣିବ
ମନେ ମନେ ଭାବୁଥିଲେ
କିଏ ବା ଜାଣିବ
ସନ୍ଦେହୀ ମନ ତୁମର ଦିଏ ଖାଲି
ଅଶେଷ ଯନ୍ତ୍ରଣା ।୧।

ଭିତରେ ଭିତରେ କାନ୍ଦ
କାହିଁ କ'ଣ ପାଇଁ
ମନ ଭରି କାମ କର
ଇଚ୍ଛା ଅନୁଯାୟୀ
ସବୁଥିରେ ଅଭିମାନ କାହିଁ କର
ତୁମକୁ ହିଁ ଜଣା ।୨।

# କେବେ କେବେ...

କେବେ କେବେ ଦେଖୁଥିଲେ ତୁମ ଫଟୋ
ମନେପଡେ ଦୁଷ୍ଟାମିର ଦିନ
କେବେ କେବେ ଭାବନାରେ ଭୟ ଆସେ
ଭାବି ତୁମ ଖିଆଲି ଜୀବନ ।୦।

ତୁମେ ଥିଲ ଭଲପାଇବାର
ସନ୍ତକ
ତୁମେ ଥିଲ ମୋ ଭିତର ରାଜ୍ୟ
ଗୋଟାକ
ତୁମେ ଥିଲ ଯେତେଦିନ
ଅଭିମାନ ଖାଲି ଅଭିମାନ ।୧।

ହାତରେ ଧରିଛି ତୁମ ବନ୍ଧେଇ
ଫଟୋଟି
ଲାଗେ ମୋତେ କଥା କୁହ ସତେକି
ଆକଟି
ତୁମ ବିନା ବଂଚିବାଟା
ମୋତେ ଲାଗେ ମରଣ ସମାନ ।୨।

# ବାଟ ଚାଲୁ ଚାଲୁ...

ବାଟ ଚାଲୁଚାଲୁ ଗୋଡ ଖସିଗଲେ
ହୋଇଯାଏ ମୁଁ ଯେ ବେସାହାରା
ଗପ ଶୁଣୁଶୁଣୁ ନିଦ ହୋଇଗଲେ
ଶୋଇଯାଏ ଭଲେ ରାତିସାରା ।୦।

ତୁମଠୁ ପାଇଛି ପ୍ରଥମ ପ୍ରେମର
ନିଟୋଳ ନିର୍ଭର ପ୍ରତିଶ୍ରୁତି
ତୁମେ ତ ମୋହର ପ୍ରୀତି ପାରିଜାତ
ନିଛକ ପ୍ରେମର ପରିଣତି
ଅଦିନ ମେଘର ଅବୁଝା ଆକାଶ
ଖୁସିରେ ହେଉଛି ଆତ୍ମହରା ।୧।

ତୁମ ହାତ ଲେଖା ଚିଠିଟିକୁ ପଢ଼ି
ଜାଣଛି ତୁମର ମନକଥା
ଯାହା ଲେଖି ଅଛ ମୋତେ ତ ଲାଗୁଛି
ମୁଁ ହୋଇଛି ତୁମ ମୁଣ୍ଡବ୍ୟଥା
ଏବେବି ବସିଛି ତୁମବାଟ ଚାହିଁ
ମୁଁ ଯେ ବସିବି ଜୀବନସାରା ।୨।

# ଝିଅଟିଏ ମୁଁ ଗୋ...

ଝିଅଟିଏ ମୁଁ ଗୋ ଝିଅଟିଏ
ଆଶାର ଆକାଶେ ଉଡ଼ିବୁଲେ ମୁହିଁ
ଆହତ କପୋତ ପକ୍ଷୀଟିଏ ।୦।

ଦୁନିଆ ଯାକରେ କେହି ଜଣେ ନାହିଁ
ଯିଏ କି ନିଜର କରିଛି ମୋତେ
ଝିଅ ଜନମଟା ପରଘରକୁ ଯେ
କିଏ ବା ଜାଣେନା ଏହି ଜଗତେ
ଦୁଇଟି କୂଳକୁ ହିତ ବୋଲି ମୁଁ ଯେ
ଦୁହିତା ନାମରେ ଡକା ହୁଏ ।୧।

ମୋତେ ନେଇ ଗଢ଼ା ହେବା ପୃଥିବୀଟା
ଧୀରେ ଧୀରେ ମୋତେ ଯାଇଛି ଭୁଲି
ଜାୟା, ଭଗ୍ନୀ, କନ୍ୟା ରୂପେ ଦେଖାଦେଇ
ସବୁରି ମନରୁ ଯାଇଛି ଚାଲି
ଭିନ୍ନ ଉପାଦାନେ ଗଢ଼ା ମୋ ଶରୀର
ପରକୁ ଆପଣା କରିନିଏ ।୨।

# ହସର ପାଚେରୀ...

ହସର ପାଚେରୀ ସେକଡ଼େ ଆମ ଗାଁ
ମୋତେ କାନ୍ଦିବାର ଦିଶେ
ଲୁହର ପରଦା ଡେଇଁ କୋହ ଛାତି
ତଳୁ କେଡ଼େ ବେଗେ ଆସେ ।୦।

ତୁମ ଓଠଧାରେ ହସ
ମନ ମୋହେ
ତୁମ ଆଖିଧାରେ ଲୁହ
କାନ୍ଦ ହୁଏ
ହସରେ କାନ୍ଦରେ ଗଢ଼ା ଏ ଜୀବନ
କେବେ କାନ୍ଦେ କେବେ ହସେ ।୧।

ଆଲୋକର ସଂଧାନରେ
ତୁମେ ଯାଅ
ଅନ୍ଧକାର ଦୂର ହେବା
ଦେଖୁଥାଅ
ଆଲୁଅ ଅନ୍ଧାର ଭରା ଏ ଜୀବନ କେବେ
କେବେ ଲୁଚେ କେବେ ଦିଶେ ।୨।

# ଲୁହ ଗଡ଼ିଆସେ...

ଲୁହ ଗଡ଼ିଆସେ କୋହହୋଇ
ଉଦାସ ହୃଦୟ ଛୁଇଁଦେଇ
ଅନ୍ଧାର ଆଖିର ସଂକ୍ଷିପ୍ତ ସୁଡ଼ଙ୍ଗ ସବୁଦିନ
ପାଇଁ ବୁଜିଦେଇ ।୦।

ସ୍ମୃତିର ସଡ଼କ ଲଂବିଯାଏ ଦୂର ଅତୀତକୁ
ପ୍ରିତୀର ପୁଲକ ବହିଯାଏ ନିଘୋଡ ନିଦକୁ
ତୁମେ ଆସ ଜହ୍ନର ଆଲୁଅ ପରି ରାତିକୁ ମୋ
ଦିନ କରିଦେଇ ।୧।

ସବୁ ଠିକ୍‌ଥିଲା ଯେତେଦିନ ପାଖେ ପାଖେ ଥିଲ
ଚାଲିଗଲନି ଯେ ଚାରିକଡ଼ ଶୂନ୍ୟ କରିଦେଲ
ସ୍ୱପ୍ନରେ ସେ ଅବିକଳ ରୂପ ତୁମ ଦେଖୁ ଦେଖୁ
ଯାଏ ଆଙ୍କି ହୋଇ ।।୨

# କହିଥିଲ ରାଣ ଦେଇ...

କହିଥିଲ ରାଣ ଦେଇ
ମୋତେ ଆସିବାକୁ
ନ କହିକି ଚାଲିଗଲ
କାହିଁ ସେ ପାରିକୁ ।୦।

ତୁମ ଯିବା ପରେ ସରିଗଲା
ସବୁ ସୁଖ
ଜୀବନଟା ସାରା ଏବେ ଦୁଃଖ
ଖାଲି ଦୁଃଖ
ତୁମ ଛବି ଭଲଲାଗେ
ଖାଲି ଭାବିବାକୁ ।୧।

ଖାଲି ଲାଗେ ଚାରିଆଡ଼
ତୁମ ଯିବା ପରେ
ଯେମିତି ନିଜର କେହି
ନାହାନ୍ତି ଏଠାରେ
ରହିଥାଅ ଏଇମିତି
ଆସନ୍ତା ଜନ୍ମକୁ ।୨।

# ମୁଁ ଏକ ଭରା ନଈ...

ମୁଁ ଏକ ବଢ଼ିଲା ନଈ
ବହିନିଏ ମୋ ସାଥିରେ
ସୁଖର ଶ୍ରାବଣ
ମୁଁ ଏକ ଖିଆଲି ମନ
ବିଛୁଡିଏ ଚାରିଆଡ଼େ
ଆଶାର କିରଣ ।୦।

ଦୂର ଆକାଶରେ ମୁଁ ହସୁଥାଏ
ଉଇଁ ଆସୁଥିବା ଜହ୍ନପରି
ଭରା ଫଗୁଣରେ ମୁଁ ବାସୁଥାଏ
ଫୁଟି ଆସୁଥିବା କଢ଼ପରି
ମୋ ଦେହେ ଆନନ୍ଦର ଫଲ୍‌ଗୁ
ଆଣେ ସବୁଜ ସୁନ୍ଦର ଶିହରଣ ।୧।

ଫୁଲପକା ସଞ୍ଜବେଳେ ତୁମେ
ଯେବେ ମୋତେ ଖୋଜ ଚାରିଆଡ଼
ତୁମକୁ ନପାଇ ଏକୁଟିଆ
କାନ୍ଦି କରେ ସବୁ ଖୋଳତାଡ଼ ।
ତୁମ ଦେହସାରା ପ୍ରେମର ପସରା
ଯେତେ ରାଗରୋଷ ଅଭିମାନ ।୨।

# କେତେ ଆଶଙ୍କାରେ...

କେତେ ଆଶଙ୍କାରେ ବିତାଏ ମୁଁ ଦିନ
କେବଳ ତୁମରି ପାଇଁ
କେତେ ଭରସାରେ କାଟେ ମୁଁ ଜୀବନ
ନିହାତି ନିଜର ହୋଇ
ଅଭିଯୋଗ ତୁମ ଅଭିମାନଭରା
ଚାହାଣୀର ଭରା ନଈ ।୦।

ଚଉଠେ ଚିନ୍ତାର ଚନ୍ଦ୍ରିକା ତୁମେ
ଅନେକ ତାରାର ମେଳେ
ଶୂନ୍ୟ ଶ୍ରାବଣର ଶୃଙ୍ଖଳା ଦେହରେ
ଚୋରା ଶିହରଣ ଖେଳେ
କେଉଁ ଅଧିକାରେ ତୁମ ଓଠଧାରେ
ହସ ଟିକେ ହେବି ମୁହିଁ ।୧।

ନିରବ ରାତିର ନିର୍ଜନ ଦ୍ୱୀପେ
ତୁମେ ମୋ ନିରୋଳା ମନ
ନିଶ୍ଚିତ ଦୁଃଖର ଘାଟି ରାସ୍ତାରେ
ଦେଲ କିଆଁ ନିର୍ବାସନ
ପ୍ରତାରଣାକୁ ମୁଁ ଆପଣାଇ ଅଛି
ମଉଳିଲା ଫୁଲ ହୋଇ ।୨।

# ଆମ ଗାଁ ଗଳିରାସ୍ତା...

ଆମ ଗାଁ ଗଳି ରାସ୍ତା ତୁମକୁ ଖୋଜିଲା ବେଳେ
ବଂକା ଦେଖାଯାଏ
ସେଇ ରାସ୍ତା ଦେଇ ତୁମ ସାଥେ ଗଲା ବେଳେ ପୁଣି
ସିଧା ହୋଇଯାଏ
ଯେତେସବୁ ପାଦଚିହ୍ନ ପାଗଳ ମନକୁ
ମୋର ଚହଲାଇ ଦିଏ ।୦।

ରାସ୍ତାକଡେ ଯେତେ ଗଛ ସବୁ ଲାଗନ୍ତି ମୋତେ
ବଢିଗଲା ପରି
କାଲି ଯିଏ ଛୋଟ ଥିଲା କେଡ଼େ ବେଗେ ଭୂମିରୁ ସେ
ଆସିଛି ବାହାରି
ପିଲାଦିନୁ ଦେଖୁଛି ସେ ରାସ୍ତାସବୁ,
ଦେଖୁଥିବି ବଂଚିଥିବା ଯାଏ ।୧।

ରାସ୍ତାସବୁ ଖାଁ ଖାଁ ଲାଗେ ତୁମେ ଯେବେ ନଥାଅ
ଗାଆଁରେ ଆମର
ପବନ ପତଳା ହୁଏ ପାଣି ବି ତ ଶୁଖିଯାଏ
ନଈ ପୋଖରୀର
ଅନ୍ଧାରେ ଅଦୃଶ୍ୟ ହୋଇ ରାସ୍ତା ଦିଶେ ନାହିଁ
ତୁମେ ନ ଫେରିବା ଯାଏ ।୨।

# ଫଗୁଣ ଆସିଛି...

ଫଗୁଣ ଆସିଛି ଆଜି କୋଇଲି କଣ୍ଠରେ
ବସନ୍ତର ଆତୁର ଆଖିରେ
ରଂଗ ଅବିରର ଖେଳ ପାଗଳ କରିଛି
ଭାରି ଭାରି ସଂପର୍କ ଡୋରୀରେ ।୦।

ଉଦାସ ଗ୍ରୀଷମ, ଘନଘୋର ବର୍ଷା
କେବେଠାରୁ ସବୁତ ଗଲେଣି
ଶୀତର ପ୍ରକୋପ ଛୁଇଁ ବସୁଧାକୁ
ଚାହୁଁ ଚାହୁଁ ନିଖୋଜ ହେଲାଣି
ଫଗୁଣର ଫୁଲମାନ ଉଡିବୁଲେ
ଫୁଲବନ ପ୍ରଜାପତି ମେଳେ ।୧।

ଭଅଁର ଚୁମୁଚି ଜାତି ଜାତି ଫୁଲ
ଚପଳ ଚକୋର ମୁହଁ
ମନମୋହି ନିଏ ମଲ୍ଲିଫୁଲ ବାସ୍ନା
ରଂଗଣୀ ଫୁଲର ଦେହ
ତୁମେ ରହିଥିବ ସବୁଦିନ ମୋର
ଭଲ ପାଇବାର ହୃଦୟରେ ।୨।

# ତୁମେ ଗଢ଼ିଦେବ...

ତୁମେ ଗଢିଦେବ କହିଥିଲ ରାଣଦେଇ
ହଳେ ସୁନା କାନଫୁଲ
ଗଢ଼ି ତ ଦେଲନି ଛାଡ଼, ପଚାରିଲେ କୁହ
ଏବେ ସବୁ ଭୁଲିଗଲ
ପଣତ କାନିରେ ମୋର ବଳକା ଆୟୁଷ
ତୁମ ଧୀରେ ବାନ୍ଧି ଦେଲ ।୦।

ତୁମ ସାଥୀରେ ପାଦ ମିଳାଇ ଚାଲିବାକୁ
ଚାହିଁଲେ ବି କାହିଁ ଡରେ
ମନେ ମନେ ଯାହା ଭାବେ କରିବାକୁ
କରିବି କି ଅଧିକାରେ
କପାଳ ଲିଖନ ହେବ ଭୋଗିବାକୁ
ହେଉ ଖରାପ କି ଭଲ ।୧।

ମାଟିରେ ତିଆରି ଛୋଟ କଣ୍ଢେଇ ମୁଁ
ପଡ଼ିଗଲେ ଭାଂଗିଯିବି
ଯେତେ ଗାଳି କଲେ କହିଥିବା କଥା
ସବୁ ମନେ ରଖିଥିବି
ତୁମରି ଓଠରେ କଢ଼ ହସଧାରେ
ହୋଇଯିବ କଇଁଫୁଲ ।୨।

# ଜାଣି ପାରିଲିନି...

ଜାଣିପାରିଲିନି କେତେବେଳେ ତୁମେ
ଆସି ମୋର ଆଖି ବୁଜିଦେଲ
ଯାହା ଚାହୁଁଥିଲି କହିବନି ତୁମେ
କହୁ କହୁ ସବୁ କହିଦେଲ ।୦।

ବସନ୍ତ ମଳୟେ ମାତି ମୁଁ ଅଧୀର
ସପନର ଫୁଲ ଉପବନେ
ଚଞ୍ଚଳ ଆଖିର ମଧୁ ମାଦକତା
ହଜିଯାଏ ଖାଲି ଅଭିମାନେ
ଚୁଆ ଚନ୍ଦନରେ ବାସୁଥାଅ ତୁମେ
ସତେକି କୁଆଁରୀ କିଆଫୁଲ ।୧।

ମନର ମନ୍ଦିରେ ଦୀପଟିଏ ଜାଳି
ବସିଛି କେବେଠୁଁ ବାଟ ଚାହିଁ
ଆନନ୍ଦେ ଅଧୀର ହୃଦୟକୁ ମୋର
କାହିଁକି କରୁଛ ନାହିଁ ନାହିଁ
ଫୁଲ ଫଗୁଣର ଆକାଶରେ ମୋର
ନିଆରା ଆଶାର ଶଙ୍ଖଚିଲ ।୨।

# ମୁଁ ତ ଅମାନିଆ...

ମୁଁ ତ ଅମାନିଆ ଏକ ଝରଣା
ପାହାଡ ଖୋଲର କୋଳାହଳ ଡେଇଁ
ଯାଉ ଯାଉ ହେଲି ବାଟବଣା ।୦।

ତୁମେ ତ ଜାଣିଛ ତୁମ ଆଖିରେ ମୁଁ
ଲୁହ ପରି ଆପଣାର
ତୁମେ ତ ଦେଖିଛ ନୀରବ ରାତିରେ
ମୁଁ ନିରୋଳା ଅନ୍ଧକାର
କୁଆଁରୀ ମନର କଳପନା ତଳେ
ତୁମ ମତିଗତି ନାହିଁ ଜଣା ।୧।

ଅବସନ୍ନ ମୋର ଆଖିପତା ଧାରେ
ତୁମେ ତ କଜଳ ଗାର
ବାଉଳା ମନର ବେଳାଭୂମି ପରେ
ତୁମେ ଏକ ବତୀଘର
ଝରା ଶେଫାଳୀର ଝାଉଁଳା ଦେହରେ
ଖୋଜୁଛି ଆଜି ତୁମ ଠିକଣା ।୨।

# ଅନୁତାପ ଅନଳରେ...

ଅନୁତାପ ଅନଳରେ ଜଳିଯାଏ ମୁଁ ଗୋ
ସ୍ମୃତିର ସଳିତା ହୋଇ
ମରିଚିକା ପଛେ ଖାଲି ଧାଉଁଥାଏ ଟିକେ
ସୁଖର ସଂଧାନ ପାଇଁ ।୦।

ବୁଝେନା ଆଜି ଅନ୍ତର ମୋର
ଦୁଃଖରେ ପଡୁଛି ଭାଂଗି
ବିଶ୍ୱାସେ ମୋ ବିଷ ଭରିଦେଲ
ବଂଚିବି ମୁଁ କାହାଲାଗି
ବିରହ ବେଦନା ଅସ୍ତବ୍ୟସ୍ତ କରେ
ଅସହ୍ୟ ଯନ୍ତ୍ରଣା ଦେଇ ।୧।

ସୁନାର ପ୍ରତିମା ପରି ତୁମେ
ଝଟକୁଛ ଝଲମଲ
ପ୍ରୀତିର ପସରା କାହିଁ ପାଇଁ
କହୁ କହୁ ଖୋଲିଦେଲ
ପ୍ରେମର ନିଶାରେ ପାଇବା ଆଶାରେ
ବସିଛି ମୁଁ ବାଟ ଚାହିଁ ।୨।

# ବେଳ ଦେଖି...

ବେଳଦେଖି ତୁମେ ଆସ
କାହିଁ କେତେ ଦିନୁଁ
ଏତେ ଦିନ ପରେ ବି ତ
ପଶୋରିନ ମନୁ
ଆଖିର ଆକାଶେ କିବା ତୁମେ ଲାଗ
ସତେ ଏକ ଇନ୍ଦ୍ରଧନୁ ।୦।

ସ୍ମୃତିର ସଉପ ପାରି
ମିଛେ ଶୋଇଗଲ
ବସିଥିଲି ବାସି ଶେଯେ
ଆଖି ବୁଜିଦେଲ
ନୀରବତା ମୋର ଭାଂଗିଦେଲ ତୁମେ
ହୃଦୟ ନିଭୃତ କୋଣୁ ।୧।

ସରଳ ମନରେ ସୁଆଦିଆ
କଥା ହେଲ
ବହଳେ ବାସ୍ନାରେ ଚାରିଆଡ
ଭରିଦେଲ
କଥାରେ କଥାରେ କହିଦେଲ ଏତେ
ସବୁ କଥା ଜାଣୁ ଜାଣୁ ।୨।

# ଆମ ଗାଁ ଜହ୍ନ...

ଆମ ଗାଁ ଜହ୍ନ ଉଏଁ
ତୁମ ଗାଁ ଆକାଶରେ
ଆମ ଗାଁ ଝଡ଼ ବହେ
ତୁମ ଗାଁ ବତାସରେ
ତୁମ ଗାଁ ହଂସମାନେ ପହଁରନ୍ତି
ଆମ ଗାଁ ନଈ ନିଭୃତ କୋଣରେ ।୦।

ତୁମ ଚାହାଣୀର ଚୁମ୍ବକରେ
ଟାଣି ହୋଇ
କେତେବେଳେ ହୋଇଯାଏ କାଠର କଣ୍ଢେଇ
ତୁମ ଆଖି ନୀରବତା ଝରିଯାଏ
ମୋ ଆଖିର ଅଦୃଶ୍ୟ ଅଶ୍ରୁରେ ।୧।

ମୋ ପ୍ରେମର ଫୁଲଫୁଟେ
ତୁମ ବଗିଚାରେ
ତୁମ ହସ ଉଙ୍କିମାରେ
ମୋର ଓଠଧାରେ
ହୃଦୟଟି ମୋର ଆସିଛି ମୁଁ ଛାଡି
ତୁମ ଜାମୁଗଛ କୋରଡରେ ।୨।




# ନିର୍ଜନ ଦ୍ୱୀପରେ...

ନିରିଜନ ଦ୍ୱୀପ ମାଟି ଛୁଇଁ ଛୁଇଁ
ନିଷ୍ଫିତ ଦୁଃଖରେ ବୁଡ଼ିଗଲି
କେଉଁ ଅପରାଧେ ଦେଲ ନିର୍ବାସନ
ହସି ହସି ତାକୁ ବରିନେଲି ।୦।

ତୁମ ଅଗଣାର ତୁଳସୀ ଚଉରା
ପାଶେ ଜାଳୁଥିଲେ ସଂଜବତୀ
କେତେ କେତେ କଥା ମନାସି ଯେ ଥିଲେ
ସାକ୍ଷୀ ଅଛି ସେହି ଜହ୍ନରାତି
ବିତାଇଛେ ଯେତେ ସଂଜ ସକାଳ
ଧୀରେ ଧୀରେ ତାକୁ ଭୁଲିଗଲି ।୧।

ତୁମେ ଥିଲ ଦିନେ ଅବୁଝା ନଈରେ
ଚହଲା ପାଣିର ଢେଉ
ନଈ ଅତଡାରେ ଗୋଡ଼ ଖସିଗଲା
ସେ ପାଣିରେ ପାଦ ଦେଉ
ବେଦନା ବିଧୂର ବିଦାୟ ବେଳାକୁ
ମନେ ମୁଁ କରିଛି ଜପାମାଳି ।୨।

# ପାପର ପୃଥିବୀ...

ପାପର ପୃଥିବୀ ପହଡେ ନିଦର
ସପନରେ ଦେଖୁଅଛି
କିଏ ତାର ପର କିଏ ବା ନିଜର
ନିଜେ ସବୁ ପରଖୁଛି ।୦।

ଅଦିନ ମଳୟ ଅବୁଝା ଦେହକୁ
ଯେବେ ଥରେ ଛୁଇଁଯାଏ
ମଲାଗଛ ମନ କଅଁଳି ଉଠଇ
ପାଉଁଶ ବି ଫୁଲ ହୁଏ
ମିଠା ମିଠା ହସ ଉଦାସ ଓଠରୁ
ସତେକି ବା ଓହ୍ଲିଛି ।୧।

ଜୀବନ ଯାକର ଯନ୍ତ୍ରଣା ସବୁକୁ
କରିଦେଲେ ଆପଣାର
ଭଲପାଇବାର ଚନ୍ଦନ ବନରେ
ଶୁଭେ ଡାକ ଫଗୁଣର
ସମୟ ନଦୀରେ ମନ ନଉକାଟି
ଦୁଃଖ ପାଣି କାଟି ଯାଉଛି ।୨।

# ଶ୍ରାବଣ ଲେଖୁଛି...

ଶ୍ରାବଣ ଲେଖୁଛି ଚିଠି
ବରଷା ହାତରେ
ଭାରି ଭାରି ଦେହଟା'ର
ଭିଜିଯିବା ପରେ ।୦।

ଭରସାର ଭସାମେଘ
ଭାସିଯାଏ କାହିଁ
ଏପଟ ସେପଟ ହୁଏ
ସ୍ଥିର ରହେ ନାହିଁ
ବର୍ଷା ଭିଜା ଆଖିପତା
ମୁଦିଯାଏ ଧୀରେ ।୧।

ପ୍ରେମ ହୁଏ ପ୍ରତାରଣା
ଭୁଲ ବୁଝାମଣା
ଉଦାସ ଓଠରୁ ଖୋଜେ
ପ୍ରଶ୍ନର ଠିକଣା
ବଂଦୀ ହୁଏ ଦେହମନ
ହୃଦୟ ସାଥୀରେ ।୨।

# ଆତୁର କଣ୍ଠରେ...

ଆତୁର କଣ୍ଠରେ ଡାକୁଛି ତୋତେ
ଜୀବଧନ କାଳିଆ
ବସିଛୁ ମଉନେ ପଥର ମୂରତି
ତୁ ନୀଳାଚଳିଆ ।୦।

ଝଟକୁଛି ସୁନାଦେହ
ରତନ ବେଦିରେ
ବିରାଜୁଛି ଶୁଭ୍ରନୀଳ
କାନ୍ତି ଶ୍ରୀଅଂଗରେ
ପରମ ପବିତ୍ର ତୋ ମନ୍ଦିର
ଗାତ୍ର ହେ ଚଉବାହା ।୧।

ଝରିପଡୁ ତୋ ଦେହରୁ
କରୁଣାର ବାରି
ଦୁନିଆରୁ ଦୁଃଖ ଶୋକ
ଯାଉ ଅପସରି
ଭରିଦେ ସବୁରି ମୁଖରେ
ହସ ତୁ ଚକାଆଖିଆ ।୨।

# ଭାସିଆସେ...

ଭାସିଆସେ ଚଉଦିଗୁ
ସଂଗୀତର ସୁର
ସେ ସୁରରେ ତାଳଦିଏ
ଯିଏ ବାରବାର
ସେ ତ କେହି ନୁହେଁ ମୋର ଜଗତ ଠାକୁର ।୦।

ଧୂପଦୀପ ଚନ୍ଦନରେ
ବାସନା ଅପାର
ସେ ବାସନା ମହ ମହ
କୋଟି ବ୍ରହ୍ମାଣ୍ଡର
ସେ ତ କେହି ନୁହେଁ ମୋର ଜଗତ ଠାକର ।୧।

କାହାପାଇଁ ନିତିଲୋଡ଼ା
ତୁଳସୀର ମାଳ
ସେ ମାଳରେ ଗୁନ୍ଥା ଯେତେ
ଭକତ ଭଣ୍ଡାର
ସେ ତ କେହି ନୁହେଁ ମୋର ଜଗତ ଠାକୁର ।୨।

# ସାଇ ଭଗବାନ

ବନ୍ଧୁର ଏ ପଥେ ନାହିଁ କେହି ସାଥେ
ଆସ ସାଇ ଭଗବାନ
ମନ ମନ୍ଦିରେ ମୋ ପ୍ରଦୀପ ଜଳାଇ
ଦିଅ ତୁମ ଦରଶନ ।୦।

ସର୍ବ ଦୁଃଖ ହର
ହେ ପରମେଶ୍ୱର
ଶାନ୍ତିର ବାରତା
ଦିଅ ବାରଂବାର
ଭକତି କୈବଲ୍ୟ କଣିକାଏ ହେଲେ
କର ସାଦରେ ଗ୍ରହଣ ।୧।

ଶାନ୍ତ ସୁକୋମଳ
ସେ ପଦ ଯୁଗଳ
ଭକତିର ଉତ୍ସ
ଭକତ ପାଗଳ
ଦୁଃଖ ଅବସାଦ ହେ ସଚ୍ଚିଦାନନ୍ଦ
କରବାରେ ଅବସାନ ।୨।

# କାଳିଆ ଦେହରେ...

କାଳିଆ ଦେହରେ ତୋର କିଏ ସେ ଭରିଚି କହ
ଅମାପ ଶକତି
ସେନେହ ଡୋରିରେ ବାନ୍ଧି କାହିଁ କେତେ ଦୁଃଖୀ ରଙ୍କି
ଦେଉଛୁ ମୁକତି ।୦।

କି ଯୋଗରେ ଆସିଲି ଏ
ସହରକୁ ତୋର
କି ବେଳାରେ ପହଁଚିଲି
ତୋର ଶ୍ରୀମନ୍ଦିର
ଧୂପଦୀପ ଚନ୍ଦନରେ ଢାଳିଦେଲି ତୋ ପାଦରେ
ଅଶେଷ ଭକତି ।୧।

ଆନନ୍ଦ ବଜାରେ ତୋର
ଭୁଲିଗଲି ଭୋକ
ବାଇଶି ପାହାଚେ ସତେ
ଶୁଣିଲୁ ମୋ ଡାକ
ଆଖିରେ ଆଖିଏ ଲୁହ କି ଦେଇ ପୂଜିବି କହ
ପ୍ରୀତିର ମୂରତି ।୨।

# ଭକ୍ତିର ଭାବରେ ବଂଧା...

ଭକ୍ତିର ଭାବରେ ବଂଧା
ମୋ ଭାବ ଠାକୁର
ଭାବରେ ଭାବରେ ଆସ
ମୋ ଭାବ ମନ୍ଦିର ।୦।

ଶୂନ୍ୟରେ ବ୍ରହ୍ମ ଦିଶୁଛି
ବ୍ରହ୍ମହୁଏ ଶୂନ୍ୟ
ଶୂନ୍ୟବ୍ରହ୍ମ ପୂର୍ଣ୍ଣବ୍ରହ୍ମ
ଦେହେ ହୁଏ ଲୀନ
ଭାବର ସହିତ ଭକ୍ତି ଯୋଡ଼ିଦିଅ ସାଇ ସୁନ୍ଦର ।୧।

ଚତୁର୍ଦ୍ଧା ମୂରତି ରୂପେ
ଦିଅ ଦରଶନ
ଶ୍ରୀରାମ ଶ୍ରୀକୃଷ୍ଣ ସାଇ
ଆହେ ଭଗବାନ
ଭାବରେ ଲାଗିଛି ମାୟା ଖୋଜୁ ଖୋଜୁ ଭାବନଗର ।୨।

ଧୂପଦୀପ ଚନ୍ଦନରେ
ବାସେ ଚଉଦିଗ
ହୃଦୟ ମନ୍ଦିରେ ତୁମେ
ନୀଳ ଅନୁରାଗ
ଭାବକନ୍ଦରରୁ ମୋର ଝରିଯାଉ ସାଇ ନିର୍ଝର ।୩।

# ସପନେ ଦେଖିଲି...

ସପନେ ଦେଖିଲି ପ୍ରିୟା
କୃଷ୍ଣଚୂଡା ଫୁଲର ଶେଯରେ
ଗୋପନେ ଲେଖିଛୁ ଚିଠି
ପ୍ରଣୟର ହାତ ପାଖୁଡାରେ ।୦।

ତୋ ଓଠର ଭାଷା ରଚେ
ବିରହ କବିତା
ତୋ ଉଦାସ ଚାହାଣୀରେ
ପ୍ରେମ ମାଦକତା
ଲାଜର ଓଢ଼ଣା ତଳେ
ଝରିଯାଉ ପ୍ରୀତି ପରଶରେ ।୧।

ଲୁହାର ଶିକୁଳି ଖୋଲି
କେଣେ ଯାଉ ଉଡ଼ି
ବୟସ ଡେଣାରେ ପରା
ମୁଁ ତୋର ପ୍ରହରୀ
ସମୟର ଆଇନାରେ
ଉଡ଼ିବୁଲୁ ପ୍ରଣୟ ନିଶାରେ ।୨।

# ସବୁ ସମ୍ଭାବନା...

ସବୁ ସମ୍ଭାବନା ମଉଳିଯାଇଛି
ସଂଜ ଆସିଲାଣି ନଇଁ
ସବୁ ବାଲିଘର ଭାଂଗିଯାଉଅଛି
ଲହରୀଟି ଦେଲେ ଛୁଇଁ ।୦।

ହଜିଲା ଅତୀତ ହେଜି ହେଉଅଛି
ସାରାଦିନ ସାରାରାତି
ବିଳପି ଉଠୁଛି ବହଳେ ବିଶ୍ୱାସ
ନପାଇ ନିରୋଳା ସାଥୀ
ଯେତେ ବୁଝାଇଲେ ବୁଝୁନାହିଁ ମନ
ଚାହେଁ ଉଡିଯିବା ପାଇଁ ।୧।

ତୁମଠୁ ଦୂରତା ଯେତେ ବଢ଼ିଯାଏ
ସେତେ ଜଳିଜଳି ଯାଏ
ତୁମକୁ ସପନେ ଦେଖିବା ପାଇଁ କି
ରାତିକି ସାଂଗରେ ନିଏ
ଲୁହକୁ ଦେଇଛି ମେଘର ଠିକଣା
ଦେହେ ବରଷିବା ପାଇଁ ।୨।

# ଶାମୁକାଟିଏ ମୁଁ...

ଶାମୁକାଟିଏ ମୁଁ ସାଗର ବେଳାରେ
କେହି ନାହିଁ ମୋର ସାଥୀ
ଛୋଟବଡ଼ କେତେ ଢେଉମାଡ଼ ସହି
ବିତାଉଛି ଦିନରାତି ।୦।

ଲହରୀ ଆସିଲେ ପୋତି ହୋଇଯାଏ
ବେଳେବେଳେ ବାଲି ଦେହେ
କେବେ ଲୁଚିଯାଏ କେବେ ଦେଖାଦିଏ
ସବୁରି ମନକୁ ମୋହେ
କେତେ କେତେ ଦୁଃଖ ସହି ମୁଁ ନେଇଛି
ଆନନ୍ଦରେ ମଥାପାତି ।୧।

ମୁଁ ଜାଣିଛି ମୋର ପେଟରେ ଭରିଚି
ମୁକୁତାର ମଣିମାଳ
କେମିତି ତାହାକୁ ରଖିବି ସାଇତି
ପାଏ ନାହିଁ ଥଳକୂଳ
କପାଳ ଆଦରି ପଡିଛି କେବେଠୁ
ଭାଗ୍ୟ ଦେଉନାହିଁ ସାଥୀ ।୨।

# ପାଦକୁ ଦିଅନା...

ପାଦକୁ ଦିଅନା ନୂପୁର ମୋତେ ଗୋ
ଦେହେ ଫୁଲପକା ଶାଢ଼ୀ
ଗଳାକୁ ଦିଅନା ମୋତିମାଳ ଆଣି
ହାତକୁ ରଂଗୀନ ଚୁଡ଼ି ।୦।

କଣ୍ଠରେ ମୋର ଯେ ବେସୁରା ରାଗିଣୀ
ନୃତ୍ୟ ମୋର ଛନ୍ଦହରା
ବିରହ ବିଧୂରା ନାୟିକାଟିଏ ମୁଁ
ଜୀବନଟା ଦୁଃଖଭରା
ବିଫଳତା ମୋର ଭାଗ୍ୟରେଖାଟିକୁ
ପଛକୁ ଧରିଛି ଭିଡ଼ି ।୧।

ଆଖିକୁ ଦିଅନା ମନଭରି ନିଦ
ଓଠକୁ ଦିଅନା ହସ
ସ୍ମୃତିକୁ ଦିଅନା ଭାବିବାର ଶକ୍ତି
ଦେହକୁ ଦିଅନା ସ୍ପର୍ଶ
ଜଳି ଜଳି ମୁହିଁ ଜାଳିପୋଡ଼ି ଦିଏ
ମୋ ଭିତର ଫୁଲକଢ଼ି ।୨।

# ଆଖିକୁ ମାଗିଲି...

ଆଖିକୁ ମାଗିଲି ଆଲୁଅ ଟିକେ ମୁଁ
ସିଏ ଦେଖାଇଲା ଅନ୍ଧକାର
ମନକୁ ମାଗିଲି ମମତା ମୁଠାଏ
ସିଏ ଦେଲା ମୋତେ ଅହଂକାର ।୦।

ମେଘକୁ କହିଲି ବରଷିବା ପାଇଁ
ସିଏ ଉଡ଼ିଗଲା ପବନରେ
ଆକାଶ ଦେହରେ ଖୋଜିଲି ତାରାକୁ
ସିଏ ଲୁଚିଗଲା ସପନରେ
ରାତି ବିତାଇଲି ଏକା ଏକା ମୁହିଁ
ସାଥି ବିନା ଲାଗେ ହାହାକାର ।୧।

ମାଟିକୁ ଡାକିଲି ମାଆ ମାଆ ବୋଲି
ସିଏ ଦେଲା ନାହିଁ ଧରାଛୁଆଁ
ସାଗର ବେଳାରେ ଖୋଜିଲି ଶାମୁକା
ସିଏ ବୁଲାଇଲା ମୋତେ ଭୁଆଁ
ମାୟା ମରିଚିକା ପଛେ ଧାଇଁ ଧାଇଁ
ହେଲି ଅପଦସ୍ତ ବାରଂବାର ।।୨

# ତୁମେ ଭାବୁଥିଲ...

ତୁମେ ଭାବୁଥିଲ ଅନ୍ଧକାର ଯା'କୁ
ସେ ତ ଆଲୋକଠୁ ବଳି
ତୁମେ ଭୋଗୁଥିଲ ଯାତନା ଯା'ଠାରୁ
ସେ ତ ଗୋଲାପର କଳି ।୦।

ଭାବନା ରାଇଜେ ଥରେ ବୁଲିଗଲେ
ସବୁ କିଛି ସତ ଲାଗୁଥାଏ
ପରକୁ ଆପଣା କରିବାକୁ ହେଲେ
କିଛି କିଛି ତ୍ୟାଗ ଲୋଡା ହୁଏ
ଆଖିର ଲୁହରେ ମାପିହୁଏ ନାହିଁ
ଓଠରେ ହସର ଚଇତାଳି ।୧।

ସମୟ ସଡ଼କେ ଘୁରିବୁଲି ମୁଁ ଯେ
ସାଜିଛି ଗୋଟିଏ ପଳାତକ
ବିଫଳତା ପାଇଁ ପଚାରି ବୁଝିଛି
ଭେଟିଛି ଯାହାଙ୍କୁ ବାଟଯାକ
କାହାଠୁ ନପାଇ ସଠିକ ଉତ୍ତର
ମରୁଛି ନିତି ମୁଁ ଜଳି ଜଳି ।୨।

# ମରିଗଲା ପରେ...

ମରିଗଲା ପରେ ସଜେଇ ଦେବଗୋ
ଫୁଲ ଚନ୍ଦନରେ ଦେହ
ଭିଜେଇ ଦେବଗୋ ଆଖିର ଲୁହରେ
ହୃଦୟ ତଳର କୋହ ।୦।

ବିତେଇଛି କେତେ ସଂଜ ଓ ସକାଳ
ପାଖେ ରହି ତୁମ ସାଥେ
କେତେ କେତେ ସ୍ମୃତି କେତେ ଅନୁଭୂତି
ଜୀବନର ଚଲାପଥେ
ସମାଧିରେ ନିତି ଦୀପ ଜାଳୁଥିବ
ଦେଖୁଥିବି ତୁମ ମୁହଁ ।୧।

ରାଗରେ ରୋଷରେ କିଏ ଯଦି କିଛି
କହିଦେଲା ସହିନେବ
ମାନ ଅଭିମାନ କିଛି କରିବନି
ଯେତେଦିନ ବଂଚିଥିବ
ଜନମ ଜନମ ସାଥୀ ହୋଇ ମୋର
ସଦା ତୁମେ ରହିଥାଅ ।୨।

## କବିଙ୍କର ଅନ୍ୟାନ୍ୟ
## ସାରସ୍ୱତ କାବ୍ୟକୃତି

୧. ସମୟର ସ୍ୱର
୨. ଆହତ ଉପତ୍ୟକା
୩. ବିବର୍ଣ୍ଣ ବସୁଧା
୪. ସାଇନାମ କେବଳମ୍
୫. ଜହ୍ନ ଜହ୍ନ ମନ
୬. ଫର୍ଚ୍ଚା ଖୋଜୁ ଖୋଜୁ





କବି ଡ. ଗୋବିନ୍ଦ ଚନ୍ଦ୍ର ଦାଶ କବିତା ରାଜ୍ୟରେ ସାଂପ୍ରତିକ ସମୟର ଏକ ପରିଚିତ ନାମ। "ଝରି ଝୁରିଯାଏ" କବିତା ସଂକଳନଟି ତାଂକର ଏକ ସଫଳ ଓ ସାର୍ଥକ ସୃଷ୍ଟି। ଏଥିରେ ସତୁରୀଟି କବିତା ସନ୍ନିବେଶିତ। ଅନୁଭବର ଅଗଣାରେ କବି ଡ. ଦାଶ ବିଚରଣ କରନ୍ତି ତାଙ୍କର ସୂକ୍ଷ୍ମ ଅନ୍ତହୀନ ଭାବନା ଓ ସରଳ, ସାବଲୀଳ ଭାଷାକୁ ଧରି ଓ ଆଂକି ଦିଅନ୍ତି ତାଙ୍କ ରଚିତ ପ୍ରତିଟି କବିତାରେ ଗଭୀର ଆତ୍ମପ୍ରତ୍ୟୟର ସ୍ୱରଲିପି ଓ ଜଟିଳ ଜୀବନବୋଧର ଅଦୃଶ୍ୟ ଚିତ୍ରପଟ। ଭାଷା ଓ ଭାବନାରେ ସେ ଯେତିକି ସ୍ୱଚ୍ଛ ଓ ସରଳ; ଛନ୍ଦ ଓ ଲୟରେ ସେତିକି ଧୂରୀଣ। କବି ଡ. ଦାଶ କେଉଁ ଏକ ଅଦୃଶ୍ୟ ଶକ୍ତିର ଇଂଗିତରେ ବିମୋହିତ ସାହିତ୍ୟର ନୀରବ ସାଧକ ଓ ଶାଶ୍ୱତ ସଂପର୍କର ସଫଳ ରୂପକାର। ତାଂକର ଅନ୍ତର୍ଦୃଷ୍ଟିରେ ଭରିରହିଛି ଜୀବନ ଜିଇଁବାର କଳା ଓ କୌଶଳ ଓ ମାନବିକତାର ମାନସରୋବର। "ଝରି ଝୁରିଯାଏ" ପାଠକୀୟ ଆଦର ଲାଭ କରୁ ଏହା ହିଁ ପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା।

- ପ୍ରକାଶକ



GYANAJUGA PUBLICATION
BHUBANESWAR -15
Email:- contact@gyanajuga.com
Website:- www.gyanajuga.com

